ଚତୁର୍ଦ୍ଦଶ ବାର୍ଷିକ

# କଳିଙ୍ଗ ଭାରତୀ ଭଞ୍ଜଜୟନ୍ତୀ ସପ୍ତାହ

ଉପଦେଷ୍ଟା ସମିତ ଅଧ୍ୟକ୍ଷ

ଡକ୍‌ଟର ପଣ୍ଡିତ ନୀଳକଣ୍ଠ ଦାସ, ଏମ୍. ଏ., ଡି.ଲିଟ୍.ଙ୍କ

# ଅଭିଭାଷଣ

୧୬ ତାରିଖ ମେ ୧୯୫୭ ଗୁରୁବାର

ଉପସ୍ଥିତ ଭାଇ ଭଉଣୀମାନେ,

ଆପଣମାନଙ୍କ ଭିତରେ ସାହିତ୍ୟିକ ହିସାବରେ ସୁଧୀ ସମୀକ୍ଷକଙ୍କର ଅଭାବ ନାଇ । ପାଣ୍ଡିତ୍ୟ ବି ହୁଏତ ଯଥେଷ୍ଟ ଅଛି । ତଥାପି ମୁଁ ଆଜ ଭଞ୍ଜଶୈଳୀ ଓ ଭଞ୍ଜସାହିତ୍ୟ ସମ୍ବନ୍ଧରେ ଦୁଇ ଚାରି କଥା କହିବି । ଆଜ ଭଞ୍ଜଜୟନ୍ତୀର ଚତୁର୍ଦ୍ଦଶ ବର୍ଷର ଆରମ୍ଭ । ତେତେର ବର୍ଷ ହେଲା ଯେଉଁ ଆନ୍ଦୋଳନ ଆରମ୍ଭ ହୋଇ ବଢ଼ି ଆସିଲାଣି, ତାହା 'ପ୍ରାପ୍ତେ ତୁ ଷୋଡ଼ଶେ ବର୍ଷେ'ର ପୂର୍ଣ୍ଣତା ବା ପୂର୍ଣ୍ଣ ବ୍ୟକ୍ତିତ୍ୱ ପାଇବା ପାଇଁ ଆଉ ମାତ୍ର ଯୋଡ଼ାଏ ବର୍ଷ ବାକି ଅଛି । ମାତ୍ର ଭଞ୍ଜସାହିତ୍ୟର କାର୍ଯ୍ୟକାଳ ଏ ଦେଶର ସାହିତ୍ୟରେ ସେତିକି ନୁହେଁ । ଖ୍ରୀଷ୍ଟ ଗତ ଶତାବ୍ଦୀର ଶେଷଭାଗରେ ଯେଉଁ 'ଇନ୍ଦ୍ରଧନୁ' 'ବିଜୁଳି'ର ଦ୍ୱନ୍ଦ୍ୱଯୁଦ୍ଧ ଲାଗିଥିଲା, ତାହା ଅନୁଭବ କରିଥିବା ଲୋକ ଏବେ ହୁଏତ ଜଣେ ଅଧେଙ୍କଠୁ ବେଶି ନ ଥାଇ ପାରନ୍ତି, କିନ୍ତୁ ଏହି ଭଞ୍ଜ-ଆନ୍ଦୋଳନ ଦେଶରେ ତାହାର ଯେ ଜୀବନ୍ତ ସ୍ମୃତି ଜାଗ୍ରତ କରିଛି, ତାହା ଫିଙ୍ଗି ଦେବାର ଜିନିଷ ନୁହେଁ । ସେ ହିସାବରେ ଯାହା ଉପରେ ଆଜ ଭଞ୍ଜ-ଜୟନ୍ତୀର ପ୍ରତିଷ୍ଠା ସେ ବାୟୁମଣ୍ଡଳ ଓଡ଼ିଶାରେ ଆଦୌ ଅର୍ବାଚୀନ ନୁହେଁ ।

କାହିଁକି 'ବିଜୁଳି' ଉପରେ 'ଇନ୍ଦ୍ରଧନୁ' ଓ 'ଇନ୍ଦ୍ରଧନୁ'କୁ ଦବାଇ କରି 'ବିଜୁଳି' ସେ କାଳରେ ବାହାରିଥିଲା, ସେ ବିଷୟରେ ଆଉ ଏ ଭଞ୍ଜସାହିତ୍ୟ ଅନୁଷ୍ଠାନରେ ବିଶେଷ କହିବା ଦରକାର ନାଇ । ଏ ବିଷୟରେ ଆପଣମାନେ ହୁଏତ ବହୁତ ଶୁଣିଥିବେ । କାଳଗତିରେ ଏହାକୁ ସ୍ୱାଭାବିକ ବିକାଶ ବୋଲି କେହି

କେହି କହନ୍ତି, କହି ବି ପାରନ୍ତି । କିନ୍ତୁ ଏଥିରେ ଥିଲା ଅଧିକାଂଶ ଅନ୍ୟର ଅଜ୍ଞାତ ଓ ଜ୍ଞାତ ପ୍ରଭାବର ଫଳ ଓ ଅନୁକରଣ; ପୁଣି ନିଜେ ଶିକ୍ଷାବିଭାଗ ମାଧ୍ୟମରେ ସହଜରେ ପ୍ରତିଷ୍ଠା ପାଇଯିବାର ପ୍ରଚେଷ୍ଟା । ବଙ୍ଗଳାର 'ଲେଖାବଳୀ' ଓ 'ବେଣୀସଂହାର'ରେ ମାଇକେଲଙ୍କ 'ବୀରାଙ୍ଗନା' ପ୍ରଭୃତିର ସ୍ପଷ୍ଟ ଅନୁକରଣ କରି ଯାରି ଯେତେବେଳେ ଆମ କବି ରାଧାନାଥ ପ୍ରତିଷ୍ଠା ପାଇବାରେ ଏକ ପ୍ରକାର ନିରାଶ ହେଲେ, ସେତିକବେଳେ ଧନେ ତାଙ୍କ ଉପରର ପ୍ରାଦେଶିକ ଇନ୍ସପେକ୍ଟର ଭୂଦେବଚନ୍ଦ୍ର ମହୋପାଧ୍ୟାୟଙ୍କୁ ଉପେନ୍ଦ୍ର ଭଞ୍ଜଙ୍କ ମୋହିନୀ କବିତା ଶୁଣାଇ ତାଙ୍କୁ ଅନୁବାଦ କରି ବୁଝାଉ ଥିଲେ । ବିଚକ୍ଷଣ ଭୂଦେବ ତାଙ୍କୁ କହିଲେ, "ରାଧାନାଥ ! ତୁମେ ଓଡ଼ିଆରେ ଲେଖ" । ତାହାର ଅର୍ଥ ଯାହା ହେଉ, ରାଧାନାଥ 'ଚିଲିକା' ନାମରେ ଗୋଟିଏ ବର୍ଣ୍ଣନାତ୍ମକ ସୁନ୍ଦର ସୁମଧୁର କାବ୍ୟ, ରାଗ 'ଭୂପାଳ' (ନଷ୍ଟବାଣୀ ବୃତ୍ତ)ରେ ଲେଖିବା ଛଡ଼ା ଆଉ କିଛି ମୌଳିକ କାବ୍ୟରେ ସେକାଳରେ ବିଶେଷ ହାତ ଦେବାର ଦେଖାନାଇ । ଯେପରି ଦେଖାଯାଏ ସେ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ-କଳାକୁ ଆପଣାର କରି ନୂତନ କରିବାପାଇଁ ଗଢ଼ି ବସିଲେ ରୋମାନ କବି ଓଭିଡ୍ (Ovid)ଙ୍କ କାମ-କାହାଣୀମାନଙ୍କର ଇଂରେଜୀ ଅନୁବାଦ । ଓଭିଡ୍ ଅବଶ୍ୟ ସେ ସବୁ ଗ୍ରୀକ୍ କିମ୍ବଦନ୍ତୀରୁ ଅନୁକରଣ କରିଥିଲେ । ଆମ ଜଳବାୟୁରେ ଓଡ଼ଣାର କରିବା ପାଇଁ ସେ 'ମାଦଳା ପାଞ୍ଜି'ରେ ଲେଖା ହୋଇଥିବା କୌଣସି ବୌଦ୍ଧ ଜାତକ ଗଳ୍ପକୁ ଧରି ସେଥିରେ ଗ୍ରୀସ୍ ଦେଶୀୟ ଏକ କିମ୍ବଦନ୍ତୀକୁ ମିଶାଇ ବିଭତ୍ସ ପାର୍ବତୀ କାବ୍ୟର ଅସହ୍ୟ ଅଶ୍ଳୀଳତା-ଠାରୁ ସେହି ଗ୍ରୀସ୍ ଦେଶୀୟ ଗଳ୍ପ **Pyramus Thysbe** (ପିରାମସ ଥିସବି)କୁ ଧରି ବହୁକାଳରୁ ପ୍ରତିଷ୍ଠିତ ଓ ପବିତ୍ର

ଭୁବନେଶ୍ୱରର କେଦାର ଓ ଗୌରୀଙ୍କୁ ଧରି ଏକ ବିରାଟ ଗୁପ୍ତ ପ୍ରଣୟକୁ ଓଡ଼ିଶା ଓ ଓଡ଼ିଆ ସାହିତ୍ୟର ପୁଣ୍ୟ କିମ୍ବଦନ୍ତୀ ରୂପରେ ଦେଶର ବାୟୁମଣ୍ଡଳରେ ଖେଳାଇ ଦେଲେ । 'ଚନ୍ଦ୍ରଭାଗା' ଓ 'ଉଷା' ପ୍ରଭୃତି କାବ୍ୟମାନ ସେହିପରି ଓଭିଡ୍ ସଂଗୃହୀତ କିମ୍ବଦନ୍ତୀ-ମାନ ମାତ୍ର । (ପରର ଧନ ଆଣି ଆପଣାର କରି ଦେଖାଇବା ପ୍ରବୃତ୍ତି ଯେପରି କି ରାଧାନାଥଙ୍କର ପ୍ରକୃତିରେ ପରିଣତ ହୋଇଥିଲା । 'ତୁଳସୀ ସ୍ତବକ' ବୋଲି ସେକାଳ ଅବଧି-ହିନ୍ଦୀରେ ଲିଖିତ ତୁଳସୀ ଦାସଙ୍କର 'ରାମଚରିତମାନସ'ର ଦୁଇଟି ଅଧ୍ୟାୟର ଅନୁବାଦକୁ ସେ କେବେ କାହିଁରୁ ସଂଗୃହୀତ ବୋଲି ପ୍ରକାଶ କରି ନାହାନ୍ତି ।)

ହେଲେହେଁ ଛନ୍ଦ ବିଷୟରେ ଯାହାହେଉ ଅଶ୍ଳୀଳତା ବୋଲି ଯାହାକୁ କହନ୍ତି, ସେଥିରେ ସେ ଉପେନ୍ଦ୍ର ଭଞ୍ଜଙ୍କୁ ନିଜର ପୂର୍ବ-ପୁରୁଷ ବୋଲି ଧରି ମଧ୍ୟ ତାଙ୍କୁ ବୁଝିପାରିନ୍ତି ବୋଲି ମନେ ହେଉନାହିଁ । 'ଲାବଣ୍ୟବତୀ'ର ନାୟକ ନାୟିକା 'କେଦାର ଗୌରୀ'ରେ କାହିଁ ରହିବେ ? ରାଧାନାଥ ସେ କଥା ବୁଝିପାରି ନାହାନ୍ତି । ବରଂ କୁହାଯାଇପାରେ ଯେ ସେ 'ଦଅ ଗଡ଼ୁ ଗଡ଼ୁ ମାଙ୍କଡ଼' କରିଛନ୍ତି । ଛନ୍ଦ ବିଷୟରେ ମଧ୍ୟ ତାଙ୍କର ଅଯଥା ଅନୁକରଣ ଆମର ସାହିତ୍ୟପ୍ରସିଦ୍ଧ । ବଙ୍ଗଳାର 'ତ୍ରିପଦୀ' ହେଉଛି ଆମର 'ମଭୁଆରୀ' । ତାକୁ ଆମେ କହୁ 'ବଙ୍ଗଳାଶ୍ରୀ' । ଆମ ଛନ୍ଦସବୁ ପ୍ରାଚୀନ କର୍ଣ୍ଣାଟୀ ସଙ୍ଗୀତରୁ ବାହାରିଛି । ସେଥିରେ ମଧ୍ୟ ସେକାଳେ 'ବଙ୍ଗଳାଶ୍ରୀ' ବୋଲି ଗୋଟିଏ ରାଗ ଅଛି । ସେହିଥିରୁ ଆମ 'ମଭୁଆରୀ'ର ବିକାଶ । ଏବେ ବଙ୍ଗଳାରେ ତାକୁ କହନ୍ତି 'ତ୍ରିପଦୀ' । ବଙ୍ଗଳାରେ ସୁନ୍ଦର ରାଗ, ସେତିକି ଆମର ଛନ୍ଦ ସାହିତ୍ୟ ସଙ୍ଗେ ପ୍ରାଚୀନ କାଳରେ ତାହାର କପରି

ସମ୍ପର୍କ ଥିଲା, ତାହା ଅବଶ୍ୟ ଆଜି କହିବାର ସାଧନ ନାହିଁ । କିନ୍ତୁ ଏହା ଆମର ଥିଲା ପ୍ରଥମେ 'ମଲ୍ଲଭଞ୍ଜ' ଓ ପରେ 'ବଙ୍ଗଳାଶ୍ରୀ' । ବଙ୍ଗଳାର ଅନ୍ୟ ଗୋଟିଏ ହେଉଛି 'ପୟାର' । ଏହାକୁ ସଂସ୍କୃତ ଓ ପ୍ରାକୃତରେ କହନ୍ତି 'ପଦାକୁଳକ' । ଏହା ଅଠର ମାତ୍ରାରୁ ଲୋକମୁଖରେ ଚଉଦ ଅକ୍ଷରକୁ ଆସିଛି । ଆମ 'ଦାଣ୍ଡୀବୃତ୍ତ'ରୁ ପ୍ରାଚୀନ 'କଳସା'ରେ ଏହି ଚଉଦ ଅକ୍ଷରୀ ବୃତ୍ତ ବାହାରି ପଡ଼ିଥିବା ଜଣାଶୁଣା କଥା । ଏହି ଦୁଇଟି ଛନ୍ଦ ବଙ୍ଗଳା ଓ ଓଡ଼ିଶା ମଧ୍ୟରେ ସମାନ । ଓଡ଼ିଶାରେ ଏହାକୁ 'ମଙ୍ଗଳ' ବା 'ମଙ୍ଗଳ-ଗୁଜ୍ଜରୀ' ବୋଲି କହନ୍ତି । କାଶୀରାମ ଦାସ ମହାଭାରତରୁ 'ବେଣୀସଂହାର'ଟି ଅନୁବାଦ କଲାବେଳେ ରାଧାନାଥ ଏହି ରୀତିଟି ପୂରାପୂରି ଅନୁକରଣ କରିଛନ୍ତି । ତାହାପରେ ସେହିପରି ଈଶ୍ୱର ଗୁପ୍ତ ପ୍ରଭୃତିଙ୍କ ଲେଖାଠାରୁ ବଙ୍ଗଳାରେ 'ତ୍ରିପଦୀ'ର ବହୁ ବ୍ୟବହାରକୁ ଧରି 'ଚାବଂଗୀ' 'କେଦାରଗୌରୀ' ପ୍ରଭୃତିର ଛନ୍ଦମାନ ଠିକ କରାଯାଇଛି । ଆଉ ଅଛ ଅଳ୍ପ ସ୍ଥଳରେ 'କଳହଂସକେଦାର' ଧରି ଛନ୍ଦର ବ୍ୟବହାର କରିବାକୁ ରାଧାନାଥ ପ୍ରଯତ୍ନ କରିଛନ୍ତି । ମଧୁସୂଦନ ରାଓ ଏ କ୍ଷେତ୍ରରେ ରାଧାନାଥଙ୍କ ପଛଶିଷ୍ୟ । ସେ ଛନ୍ଦ ହିସାବରେ ଓଡ଼ିଆ ଛାନ୍ଦସାହିତ୍ୟକୁ ଖୁବ୍ ଆଗରେ ରଖି ପାରିଛନ୍ତି । ମାତ୍ର ଅନୁକରଣରେ ଏ ଦୁହିଁଙ୍କର ଗୋଟିଏ ଦୃଢ଼ ଦୃଷ୍ଟାନ୍ତ ହେଉଛି ଉପଧା ମିଳନରେ ଛନ୍ଦର ପୂର୍ତ୍ତି ଦେଖିବା । ଏହା ବଙ୍ଗଳାରୁ ସ୍ପଷ୍ଟ ଅନୁକରଣ । ଇଂରେଜର ମଧ୍ୟ ଛାୟା ଏଥିରେ ପଡ଼ିଥାଇପାରେ । ମାତ୍ର ଇଂରେଜରେ Trey (ଟ୍ରେ) ସଙ୍ଗେ Day (ଡ଼େ) ପଡ଼େ । ଓଡ଼ିଆ ସ୍ୱରାନ୍ତ ହେବାରୁ ତାହାର ପଛ ବ୍ୟଞ୍ଜନଟି ହେଲା ଉପଧା-ବର୍ଣ୍ଣ । ତାହାପଛକୁ ଗୋଟିଏ ସ୍ୱର ମିଳିଲେ 'ଅନ୍ତ୍ୟାନୁପ୍ରାସ' ଅଳଙ୍କାର ହୁଏ । ସେ ସ୍ୱରଟି ନମିଳିଲେ

ଓଡ଼ିଆରେ ଛନ୍ଦଭଙ୍ଗ ହୁଏ ନାଇ । କିନ୍ତୁ ବଙ୍ଗଳାରେ 'ଦେଶ୍' ସଙ୍ଗେ 'ବେଶ୍' ନ ପଡ଼ିଲେ ଛନ୍ଦ ଅପୂର୍ଣ୍ଣ ରହେ । ଉପେନ୍ଦ୍ର ଭଞ୍ଜ ବଞ୍ଚିରହିଥିଲେ ଉପଧା-ବର୍ଣ୍ଣଟା ମିଳାଇ ଲେଖି ଦେବାକୁ ତାଙ୍କୁ ଟିକେ ହେଲେ କଷ୍ଟ ପଡ଼ି ନଥାନ୍ତା । ଅନ୍ତତଃ ରାଧାନାଥ ରାୟ ପ୍ରଭୃତିଙ୍କଠାରୁ ସେ ଏ କ୍ଷେତ୍ରରେ ଯେ ବିଶେଷ ଦକ୍ଷତା ଦେଖାଇ ପାରିଥାନ୍ତେ, ଏଥିରେ କେହି ସନ୍ଦେହ କରିବାର କାରଣ ନାଇ । କିନ୍ତୁ ଭଞ୍ଜ କୁତ୍ରାପି ଉପଧା ମିଳାଇବାକୁ ଯାଇ ନାହାନ୍ତି । ପରେ କେହି କେହି ପ୍ରାଚୀନ ସାହିତ୍ୟଶୈଳୀରେ ଛନ୍ଦ ଲେଖିଥିବା କବି (ଯଥା, ଉତ୍ପୁଲ୍ଲର ଦାସ ) ଏହି ଉପଧା ମିଳନରେ କାବ୍ୟ ଲେଖି ତାହାକୁ 'ଅନ୍ତ୍ୟାନୁପ୍ରାସ' ବୋଲି କହିଚନ୍ତି ।

ଏ କ୍ଷେତ୍ରରେ ଆଉ ଗୋଟିଏ କଥା ଲକ୍ଷ୍ୟ କରିବାର ଅଛି । ରାଧାନାଥ ରାୟ ଓଡ଼ିଆର ଶିକ୍ଷାବିଭାଗର ନେତା ଥିଲେ । ସେଇ ସମୟରେ ନିଜର କାବ୍ୟମାନଙ୍କୁ ସ୍କୁଲରେ ପଢ଼ାଇବାପାଇଁ ତାଙ୍କର ସ୍ପଷ୍ଟ ଉଦ୍ୟମ ମୋର ଆଜି ବି ମନେପଡ଼ୁଚି । ପୁଣିରେ ସେକାଳରେ **Inspecting Pandit**ମାନଙ୍କୁ ସଙ୍ଗରେ ଧରି ସେ ଏହା କରୁଥିଲେ ଓ ସେଥି ସଙ୍ଗେ ସେ ଓ ତାଙ୍କ ଲୋକମାନେ ଉପେନ୍ଦ୍ର ଭଞ୍ଜଙ୍କ କଥା ଦୂରେ ଥାଉ ସେକାଳର ଫକୀର-ମୋହନଙ୍କୁ ମଧ୍ଯ **Prize Library**ରେ ସ୍ଥାନ ଦେବାରେ ବାଧା ଦେଉଥିଲେ । ଫକୀରମୋହନଙ୍କ ଭାରତ ଇତିହାସକୁ ଉଠାଇ ଦେଇ ନିଜ ଲିଖିତ ଓ ସେକାଳର ଡାଇରେକ୍ଟର ରାଜାଙ୍କ ନାମରେ ପ୍ରକାଶିତ ଭାରତ ଇତିହାସ ଚଳାଇଥିବା କଥା ମୋର ଆଜି ମଧ୍ଯ ମନେ ପଡ଼ୁଚି । ମୁଁ ନିଜେ ଦୁଇଟି ଇତିହାସ ପଢ଼ିଥିଲି । ଫକୀରମୋହନଙ୍କର ଇତିହାସଟି ଉତ୍କୃଷ୍ଟତର ବୋଲି ମୋର ଏବେ ମଧ୍ଯ ମନେ ଅଛି ।

ଯେଉଁ ହେଉଚି ଯଥାର୍ଥରେ 'ଇନ୍ଦ୍ରଧନୁ', 'ବିଜୁଳି'ର ବେଳ ତା ତାର ଠିକ ପରେ ତା ପ୍ରଭାବର ଫଳ । ସେତିକିବେଳେ ପ୍ରାଚୀନ ସାହିତ୍ୟ ସଙ୍ଗେ ଅର୍ବାଧୁନାତନ ସାହିତ୍ୟ ପ୍ରତି ଅବହେଳା, ଏପରିକି ଘୃଣା, ଦେଶରେ ଶିକ୍ଷା ବିଭାଗୀୟ ଅନୁଷ୍ଠାନମାନଙ୍କୁ ଧରି ଯେପରି ପ୍ରବୃତ୍ତି କରାଯାଇଥିଲା, ତାହା ଯେଉଁମାନେ ଦେଖିଥିଲେ ତାଙ୍କ ମଧ୍ୟରୁ ମୋ ଛଡ଼ା ଆଉ ବେଶି ଲୋକ ବଞ୍ଚିଚନ୍ତି କି ନା ସନ୍ଦେହ ।

ବ୍ୟକ୍ତି ଓ ଜାତିପରି ସାହିତ୍ୟର ମଧ୍ୟ ଗୋଟିଏ ବ୍ୟକ୍ତିତ୍ୱ ଅଛି । ଯେଉଁ ବ୍ୟକ୍ତିତ୍ୱର ଉପାଦାନ ତିନୋଟି । ଏକ—ପରମ୍ପରା, ଦୁଇ—ପୂର୍ବଦୃଷ୍ଟି, ତିନି—ପରିସ୍ଥିତି । କୁକୁର କାଲି ଦୁଧ ଉଡ଼ି ଦେଇଥିଲେ ଆଜି ତାକୁ ମାରି ଲାଭ କିଛି ନାହିଁ, କାରଣ ତାର ବ୍ୟକ୍ତିତ୍ୱ ନାହିଁ । କାଲି ଦୁଧ ଉଡ଼ିଥିବା କଥା ତାର ମନେ ନାହିଁ—ତାର ପରମ୍ପରା ନାହିଁ । ପୁଣି ଦୁଧ ଉଡ଼ିଲେ କଣ ହେବ, ତାହା ତାକୁ ଜଣା ନାହିଁ—ତାର ପୂର୍ବଦୃଷ୍ଟି ନାହିଁ । ଆଜି ଦୁଧ ଉଡ଼ିବ କି ନାହିଁ ତାହା ସେ ଜାଣେ ନାହିଁ—ତାର ପରିସ୍ଥିତି-ଜ୍ଞାନ ନାହିଁ । କିନ୍ତୁ ମନୁଷ୍ୟ ପଚିଶ ବର୍ଷ ତଳେ ଚୋରି କରିଥିଲେହେଁ ଆଜି ଅନୁତାପ କରୁଚି ଓ ଦଣ୍ଡ ମଧ୍ୟ ପାଉଚି । ସାହିତ୍ୟରେ ସେହିପରି । ଆମ ସାହିତ୍ୟରେ ଆଗ ଦେଖିବାକୁ ହବ ପରମ୍ପରା କଣ ? ତା ପରେ ପୂର୍ବଦୃଷ୍ଟି । ସେହି ପୂର୍ବଦୃଷ୍ଟିକୁ ଧରି ଆମର ବର୍ତ୍ତମାନର ପରିସ୍ଥିତିକୁ ଦେଖିବାକୁ ହବ ।

ଏ କ୍ଷେତ୍ରରେ ସାହିତ୍ୟ କଥା ବିଚାର କଲାବେଳେ ଆମକୁ ଇତିହାସ ଆଡ଼କୁ ଟିକିଏ ଆଖି ଦେବାକୁ ହବ । ସାହିତ୍ୟ ବୋଇଲେ ମାନବ ବିକାଶର ପ୍ରକାଶ । ଲେଖା ବହିରୁ ମାନବ

ବିକାଶର ପ୍ରକାଶ ଜଣାପଡ଼େ । ଏପରିସ୍ଥଳେ ଇତିହାସ ହେଉଛି ଏ ବିଗ୍ନରରେ ପ୍ରଧାନ ଉପାଦାନ । ଭାରତୀୟ ସାହିତ୍ୟରେ ଠିକ ଉପେନ୍ଦ୍ର ଭଞ୍ଜଙ୍କ ଭଳି ଅଶ୍ଳୀଳତା ଆରମ୍ଭ କରିଥିଲେ ଆଗେ ପୂର୍ବସୂରିମାନେ । ଉଦାହରଣ ସ୍ୱରୂପ 'ନୈଷଧ'କୁ ଦେଖ । 'ନୈଷଧ' କାବ୍ୟର ଲେଖକ ଶ୍ରୀହର୍ଷ କେଉଁଠାର ବ୍ୟକ୍ତି, ତାହା ଅବଶ୍ୟ କହି ହେଉନାଇ । କିନ୍ତୁ 'ନୈଷଧ' ଯାହା ଉପରେ ପ୍ରତିଷ୍ଠିତ, 'ନୈଷଧ'ର ଶୈଳୀ ସୌଷ୍ଠବ ଫିଟାଇବାରେ ସେଇ ମୁଖ୍ୟ ଅବଲମ୍ବନ ହେଉଛି ଭାରତର ଅଳଙ୍କାର ତତ୍ତ୍ୱ । ଭାରତର ମଧ୍ୟଯୁଗରେ ଆମର ପ୍ରଧାନ ଅବଲମ୍ବନ ହେଉଛି ଅଳଙ୍କାର । ନରସିଂହ ଦେବଙ୍କ 'ଏକାବଳୀ' ତଥା ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ-ଦର୍ପଣ' ପ୍ରଭୃତି ମହାଗ୍ରନ୍ଥମାନ ଏ କ୍ଷେତ୍ରରେ ବିଶେଷ-ରୂପେ ସ୍ମରଣୀୟ । ଏହି ମଧ୍ୟଯୁଗରେ ଏହି ଅଳଙ୍କାରଶାସ୍ତ୍ରକୁ ଧରି ସାହିତ୍ୟକୁ ବଞ୍ଚାଇ ରଖିବା, ଏପରିକି ଉଠାଇବାର କଳ୍ପନା ପଣ୍ଡିତମାନଙ୍କ ମଧ୍ୟରେ ସାଧାରଣ ଥିଲା । ଏଇଆକୁଳ କାର୍ଯ୍ୟରେ ପ୍ରକାଶ କରି ଦେଖାଇ ଆଲଙ୍କାରିକମାନେ କାବ୍ୟରେ ଧ୍ୱନି ବା ସଙ୍କେତ ଚର୍ଚ୍ଚା କରୁଥିଲେ । 'ଧ୍ୱନ୍ୟା ଲୋକ' ବୋଲି ସେଥିପାଇଁ ଅଳଙ୍କାରଶାସ୍ତ୍ର ସୃଷ୍ଟି ହୋଇଥିଲା । 'ନୈଷଧ' ପ୍ରଭୃତିର ଟୀକାକାରମାନେ ସେହି ଧ୍ୱନି ବା ସଙ୍କେତ ଆଲୋଚନାରେ ବହୁ ପ୍ରଚେଷ୍ଟା ପ୍ରକାଶ କରି ସାହିତ୍ୟକୁ ଜୀବନ୍ତ କରିଥିଲେ । ଏହି ଧ୍ୱନି ବା ସଙ୍କେତ ହେଉଛି ସାହିତ୍ୟର ପ୍ରାଣ । ଉଦାହରଣ ସ୍ୱରୂପ ଉପେନ୍ଦ୍ର ଭଞ୍ଜରେ ଦେଖ—'ଲାବଣ୍ୟବତୀ' ଅଦ୍ୟ ଯୌବନର ସଙ୍କେତ ଲାଭ କରି ଶଯ୍ୟାରୁ ଉଠି ବାହାରି ଆସିଲାବେଳେ ସଖୀ-ମାନେ ଥଟ୍ଟା କରି କହୁଅଛନ୍ତି —

“ବାଣୀ କୋକିଳୁ ମଧୁର ହେବାରୁ
ନଖ ନାଅଳୀ ଛବି ବଦ୍ଧିବାରୁ
ହୃଦ ନଦରେ ଶଉ ରଞ୍ଜିବାରେ
ସ୍ତନ କମଳ କଳି ବଢ଼ିବାରେ
କାନ୍ତି କେତକୀ ଧନୁ ଧନୁ ଗୁରୁ
ଗୁହିଁ ଅମ୍ଭେମାନେ ମନେ ବିଗୁରୁଁ ।
ପୁଷ୍ପ - ସମୟ ହେଲଣି ନିକଟ
ସତ କହ ହୋଇଲ କି ପ୍ରକଟ ।”

ଏହି ପରମ୍ପରାର ସଙ୍କେତକୁ କି ପୁରୋଦୃଷ୍ଟିରେ କେଜାଣି ମାପି ପରିସ୍ଥିତିର ପ୍ରକାଶରେ 'ବିଜୁଳି'ର କବିବର ରାଧାନାଥ ଯେପରି କହିଚନ୍ତି, ଆଧୁନିକତାର ଆଉ ବିଶେଷ ଉଦାହରଣ ନ ଦେଇ, ତା ଏଠାରେ ଉଦ୍ଧାର କରାଯାଉ—“ଏ ବାଳାକୁ ବନବାସ ସହାଇଲେ ବିଧି ଆହା କି ବିଗୁରେ । ସମୀ ଛେଦିବାକୁ ଲୋଡ଼ିଲେ ସିନା ସେ ନୀଳୋତ୍ପଳ ଦଳଧାରେ” ସଙ୍କେତଟି ମନ୍ଦ ନୁହେଁ । ତେଣୁ ଧ୍ୱନି ହୁଏତ ଏଥିରେ ଖୁବ ଅଛି । କିନ୍ତୁ ରାଧାନାଥ କାହାକୁ ନ ଜଣାଇ ଅନ୍ୟାନ୍ୟ ଅନେକ ଶ୍ଳୋକ କଲା ପରି ଏହାକୁ କାଳିଦାସରୁ ଅନୁବାଦ କରିଚନ୍ତି । କାଳିଦାସଙ୍କ 'ଶକୁନ୍ତଳା'ରେ ଦୁଷ୍ମନ୍ତ ଶକୁନ୍ତଳାକୁ ଦେଖି କହୁଚନ୍ତି—

‘ଇଦଂ କିଲା ବ୍ୟାଜ ମନୋହରଂ ବପୁଃ,
ତପଃକ୍ଷମଂ ସାଧୟିତୁଂ ଯ ଇଚ୍ଛତି ।
ନୂନଂ ସ ନୀଳୋତ୍ପଳପତ୍ରଧାରୟା,
ସମୀଲତାଂ ଛେତ୍ତୁ ମୃଷି ର୍ବ୍ୟବସ୍ୟତି ।”

ସବୁ ଧ୍ୱନି ସତ୍ତ୍ୱେ କବି ରାଧାନାଥ କ ପରମ୍ପରା ଓ ପୂର୍ବୋଦ୍ଧୃଷ୍ଟିରେ ମନେ କରିଥିଲେ ଏ ଦେଶର ପାଠକମାନେ ସଂସ୍କୃତ ନ ପଢ଼ି ନିଜ ଶକ୍ତିର ପରିପ୍ରେକ୍ଷିତରେ କର୍ଣ୍ଣଙ୍କ ତପୋବନ ଭଳି ପ୍ରତିଷ୍ଠାନ ଓ ସ୍ଥାନମାନ ନ ରଖି ବୁଝିପିବେ ଯେ ସମୀ ଗଛ ହଣା ହୁଏ ଓ ସେଥିପାଇଁ କଣ୍ଟୁରି ନ ଲାଗି ଏଠାରେ କାଇଁ ପାଖୁଡ଼ା ଦରକାର ହେଉଛି । ଶକୁନ୍ତଳାଙ୍କ ଭଳି ସୁନ୍ଦରୀ ବପୁଷ୍ମତୀଙ୍କୁ ତପସ୍ୟାର କଷ୍ଟ ବୁଝାଇବା ସଙ୍ଗେ ଏଇ ଯେଉଁ ଉପମା କାଳିଦାସ ଦେଇଥିଲେ, ତାହା ରାଧାନାଥଙ୍କ ପକ୍ଷରେ କି ସଙ୍କେତ ?

ଅଗ୍ଲ ସେ କଥା ଥାଉ । ମୁଁ କହୁଥିଲି ଇତିହାସ କଥା । ଇତିହାସର କି ପ୍ରେରଣା, ପୂର୍ବୋଦ୍ଧୃଷ୍ଟିର କି ନିକର୍ଷରେ ଉପଯୁ଼ ପରି ପରିସ୍ଥିତି ତିଆରି କରି ଆସିଛି ତା ଦେଖିବାର କଥା । ଅବଶ୍ୟ ପରିସ୍ଥିତିଟା ସର୍ବଦା ନିଜେ ନିଜେ ତିଆରି ହୁଏ ନାହିଁ । ପୂର୍ବୋଦ୍ଧୃଷ୍ଟିରେ ମଧ୍ୟ ଦ୍ରଷ୍ଟୃ ସୁଲଭ ବିଚକ୍ଷଣତା ବେଳେ ବେଳେ ପରିସ୍ଥିତିର ଯୋଜନାରେ ବହୁ ସାହାଯ୍ୟ କରେ । ବ୍ୟକ୍ତିତ୍ୱର ବିକାଶରେ ସେଥିପାଇଁ ପରିସ୍ଥିତି ବେଳେ ବେଳେ ନିଜକୃତ । ଏପରି ନିଜକୃତ ପରିସ୍ଥିତି ବ୍ୟକ୍ତିର ସ୍ୱାଧୀନ ବିକାଶରେ ବହୁତ ଦେଖାଯାଏ । ଏଠାରେ ବ୍ୟକ୍ତି ବୋଇଲେ ମାନବିକ ତଥା ସେହିପରି ସାହିତ୍ୟିକ । ଓଡ଼ିଶାରେ ସେହି ବିକାଶ କିପରି ଗତି କରିଛି ତାହା ଇତିହାସର ଆଲୋଚନାରେ ମଧ୍ୟେ ମଧ୍ୟେ ସଙ୍କେତରେ ଦେଖିବାକୁ ହେବ ।

ଓଡ଼ିଆ ସାହିତ୍ୟର ପ୍ରଥମ ବିକାଶ ଦେଖାଯାଏ 'ଶ୍ରୀମଦ୍ଭଗବଦ୍‌ଗୀତା'ରେ । ଭଗବାନ କହିଚନ୍ତି—"ଅତୋଽହଂ

ଲୋକେ ବେଦେଚ ପ୍ରଥିତଃ ପୁରୁଷୋତ୍ତମଃ ।” ଅର୍ଥାତ୍, ଅତଏବ ଲୋକରେ ବା ଜନମାନଙ୍କ ମଧ୍ୟରେ ଓ ବେଦରେ ଅର୍ଥାତ୍ ଜ୍ଞାନରେ ମୁଁ ପୁରୁଷୋତ୍ତମ ବୋଲି ପ୍ରତିଷ୍ଠିତ । ଏଠାରେ ଅର୍ଥ କରିବାରେ କୌଣସି ସନ୍ଦେହ ଅଛି ବୋଲି ମନେ ହେଉନାଇ ଯେ ଲୋକରେ ଉପାସ୍ୟରୂପେ ପ୍ରତିଷ୍ଠିତ ପୁରୁଷୋତ୍ତମ ସେତେବେଳେ କେଉଁଠାରେ ? କିଏ ? ପୁରୁଷୋତ୍ତମ ବୋଲି ଉପାସ୍ୟ ଦେବତା ପୂର୍ବେ ଭାରତବର୍ଷରେ କଳିଙ୍ଗର ଏଇ ପୁରୁଷୋତ୍ତମ (ପୁରୀ ସହର) ଛଡ଼ା ଆଉ କେଉଁଠାରେ ନ ଥିଲା । ଅତଏବ ସେତେବେଳେ ମଧ୍ୟ ଏ ସ୍ଥାନଟି ସମସ୍ତ ଭାରତରେ ନ ହେଲେହେଁ ‘ଶ୍ରୀମଦ୍‌ଭଗବଦ୍‌ଗୀତା’ ଲେଖକଙ୍କ ପାଖେ ସୁପରିଚିତ ଥିଲା । ହେଲେହେଁ ଏହା କେତେବେଳର କଥା; ପୁଣି ସେତେବେଳେ ଏଠାର ପ୍ରାକୃତ ଭାଷା କଣ ଥିଲା କହି ହେଉନାଇ । ହେଲେହେଁ ଏହା ନିଶ୍ଚୟ ଶଙ୍କରାଚାର୍ଯ୍ୟଙ୍କ ପୂର୍ବ କାଳର କଥା । ଶଙ୍କରାଚାର୍ଯ୍ୟଙ୍କ ବେଳକୁ ‘ଗୀତା’ ବହୁ କାଳରୁ ପ୍ରତିଷ୍ଠିତ ସାହିତ୍ୟ ଥିଲା ।

ଦ୍ୱିତୀୟତଃ ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀର ପ୍ରଥମ ଭାଗରେ ଉଡ୍‌ଡ଼ୀୟାନର ରାଜା ଇନ୍ଦ୍ରଭୂତି ଲେଖିଥିଲେ ‘ଜ୍ଞାନସିଦ୍ଧି’ । ‘ଜ୍ଞାନସିଦ୍ଧି’ର ପ୍ରଥମ ନମସ୍କାର ଶ୍ଳୋକ ହେଉଛି—

“ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ଶୁଦ୍ଧଂ ବ୍ୟାପିନୋ ଗଗନୋପମମ୍”

ଅର୍ଥାତ୍, ଜଗନ୍ନାଥଙ୍କୁ ପ୍ରଣିପାତ କରି ମୁଁ ଏ ପୁସ୍ତକ ଲେଖୁଛି । ସେ ଜଗନ୍ନାଥ ହେଉଛନ୍ତି ସବୁ ଜିନଶ୍ରେଷ୍ଠମାନଙ୍କର ଅର୍ଚ୍ଚିତ । ପୁଣି ସେ ହେଉଛନ୍ତି ପୂର୍ଣ୍ଣ ବୁଦ୍ଧସ୍ୱରୂପ । ସେ ହେଉଛନ୍ତି ଶୁଦ୍ଧ ଓ ଆକାଶପରି ସର୍ବବ୍ୟାପୀ ।

ଏହିଠାରେ ଦେଖିବାର ଅଛି ଏହି ଇନ୍ଦ୍ରଭୂତି ହେଉଛନ୍ତି ପୂର୍ବ ଭାରତୀୟ ବଜ୍ରଯାନ ସାଧନାର ଏକ ସିଦ୍ଧ । ଯେତେଦୂର ଜଣାଯାଏ ତାଙ୍କର ଭକ୍ଷାଭକ୍ଷ ଓ ଗମ୍ୟାଗମ୍ୟାଦି ବିଚାର ନଥିଲା । ଉଡ୍ଡୀୟାନ୍ ପୀଠକୁ ଓଡ଼ିଶା ବୋଲି ହରପ୍ରସାଦ ଶାସ୍ତ୍ରୀ ଓ ବିନୟତୋଷ ଭଟ୍ଟାଚାର୍ଯ୍ୟଙ୍କ ଭଳି ପଣ୍ଡିତମାନେ ସ୍ଥିର କରିଛନ୍ତି । ମାତ୍ର ଏହି ଉଡ୍ଡୀୟାନ ପୀଠର ପୁରୀ ବା ଜଗନ୍ନାଥଙ୍କ ସହିତ ଯଦି କିଛି ସମ୍ପର୍କ ଥାଏ, ସେଥିରେ ବଜ୍ରଯାନର ଗମ୍ୟାଗମ୍ୟାଦି ବିଚାର ପ୍ରକାଶ ପଡ଼ି ନଥିଲା । ପରବର୍ତ୍ତୀ କାଳରେ ମଧ୍ୟ କଦାପି ସେ ସ୍ତରର ଶବର ସାଧନା ଉତ୍କଳଭୂମିରେ ପ୍ରକାଶ ପାଇ ନାହିଁ । ମାତ୍ର ଏହି ଭକ୍ଷ୍ୟାଭକ୍ଷ ଗମ୍ୟାଗମ୍ୟାଦି ବିଚାରକୁ ସାଧୁ ବୋଲି ପ୍ରଚାର କରିବାପାଇଁ ପୂର୍ବଭାରତରେ ବଜ୍ରଯାନୀ ତଥା ସହଜଯାନୀ-ମାନେ ଉଡ୍ଡୀୟାନ ବା ଓଡ଼ିଶାକୁ ନିଜର ଆଦିପୀଠ ବୋଲି ପ୍ରଚାର କରିଛନ୍ତି । ଏଥିରୁ ବାହାରିଥିବା ଅନ୍ୟ ତିନୋଟି ପୀଠ ହେଉଛି— କାମାକ୍ଷା, ଶ୍ରୀହଟ୍ଟ ଓ ପୂର୍ଣ୍ଣଗିରି । ଏ ସବୁ ପୂର୍ବୋତ୍ତର ଭାରତର ସ୍ଥାନ । ଏସବୁ ଶବର ସାଧନାରେ ପଞ୍ଚମକାରକୁ ଯୋଡ଼ି ରଖିଥିଲେ । ଉଡ୍ଡୀୟାନର ଶବର ସାଧନା ସଂଯମକ୍ଷେତ୍ରରେ ପ୍ରତିପୂର୍ବ ପ୍ରତିଷ୍ଠିତ ଥିଲା । ତେଣୁ ବଜ୍ରଯାନର ତନ୍ତ୍ରପରମ୍ପରା ଏହି ଉଡ୍ଡୀୟାନରୁ ବାହାରିଥିଲା ବୋଲି ସେମାନେ ପ୍ରଚାର କରି ନିଜର ପଞ୍ଚମକାରଗତ ଶବରସାଧନା ଓ ତାହିଁ ସଙ୍ଗେ ସିଦ୍ଧପରମ୍ପରା ତିଆରି କରିଥିଲେ । ସେହି କାରଣରୁ ମଧ୍ୟ ମନେହୁଏ ସେତେବେଳର ଉଡ୍ଡୀୟାନ ବା ଓଡ଼ିଶା ପ୍ରାକୃତ, ପୂର୍ବଭାରତର ବଜ୍ରଯାନୀ ବୌଦ୍ଧଙ୍କର ଧର୍ମଭାଷା ଥିଲା । ହରପ୍ରସାଦ ଶାସ୍ତ୍ରୀ ନେପାଳରୁ ବୌଦ୍ଧଯାନ ବା ଦୋହାଁ ବୋଲି ଯେଉଁ ସବୁ ଗାନ ବାହାର କରିଛନ୍ତି, ତାହା ସେକାଳର ପ୍ରାକୃତ ବୋଲି ପ୍ରକାଶିତ

ହୋଇଛି ଓ ସେଥିରେ ଅନେକ ଲେଖକ ତଥା ସିଦ୍ଧ ଓଡ଼ିଆ ଅଛନ୍ତି ବୋଲି ପଣ୍ଡିତମାନେ ପୂର୍ଣ୍ଣ ସନ୍ଦେହ କରୁଛନ୍ତି । ପଣ୍ଡିତ ବିନାୟକ ମିଶ୍ର କହନ୍ତି, ସେ ସମସ୍ତେ ଥିଲେ ଓଡ଼ିଆ ଓ ତାଙ୍କ ଭାଷା ଥିଲା, ସେକାଳ ଓଡ଼ିଆ ପ୍ରାକୃତ ।

ଠିକ ସେହି ସମୟରେ ଓଡ଼ିଶାରେ ଥିଲା ଭୌମବଂଶ ବା ଉଲ୍ଲକୁଳର ରାଜତ୍ୱ । ଭୌମମାନେ ଥିଲେ ଖୁବ ସମ୍ଭବ ଏହି ଭୂମିର । ସେମାନଙ୍କର କେତେକ ଲେଖ ମିଳୁଛି । ସେ ସବୁର ଶୈଳୀ, ଠିକ "ନୈଷଧ" ପରି । ମନେ ହୁଏ, ସେତେବେଳକୁ ମଧ୍ୟ ଓଡ଼ିଶାରେ ଅଳଙ୍କାର ଶାସ୍ତ୍ରର ବିକାଶ ପ୍ରତିଷ୍ଠିତ ଥିଲା ଓ ପଣ୍ଡିତମାନେ ସେହି ଅଳଙ୍କାରକୁ ଧରି ନିଜର କବିତା ଲେଖୁଥିଲେ । ଗୋଟିଏ ଭୌମ ଲେଖ ଶ୍ଳୋକ ଦେଖ—ଏଥିରେ ସେକାଳର ରାଜଧାନୀ 'ଗୁହେଶ୍ୱର ପାଟକ'କୁ ଶରତ ଋତୁ ସଙ୍ଗେ ସମାନ ବୋଲି ବର୍ଣ୍ଣିତ ହୋଇଛି ।

( ଓଁ ) ସ୍ୱସ୍ତି ବ୍ୟସ୍ତଜଳାଭ୍ର ବିଭ୍ରମଧରୈଃ
ଶ୍ୱେତାପେତଯାତ୍ କରୈ ।
ରଣ୍ଡ୍ୟୈଃ ଶ୍ରୁତିଗ୍ମମରୈଷ୍ଟ
ହସିତ ବ୍ୟାକୋଷ କାଶୋଦୟୈଃ ॥
ଉଦ୍ଧାମୈର୍ମ୍ମଦଗୌରଭୈଷ୍ଟ
କରଣା ମାକ୍ଷିପ୍ତସପ୍ତଚ୍ଛଦା ମୋଦୈଃ
ମନ୍ନିହିତାଂ ସଦୈବ ଶରଦାରଂଭ ଶ୍ରୟୁବିଭ୍ରତଃ ।"

ଅର୍ଥାତ୍ କବି ଯାହା ଲେଖିଚନ୍ତି ତା'ର ମର୍ମ ହେଉଛି, (ଯେଉଁ ଗୁହେଶ୍ୱର ପାଟକରୁ ସମ୍ରାଟ ଏ ଦାନ ଦେଉଚନ୍ତି ସେହି ଗୁହେଶ୍ୱର ପାଟକ ଶରତ ଋତୁ ଆରମ୍ଭର ଶୋଭାକୁ ଧାରଣ କରିଛି) କପଟହିନା,

ଧଳା ରାଜଛତ୍ର ସବୁ ସହରରେ ବ୍ୟାପ୍ତ ହୋଇଛି (ବହୁତ ଛତ୍ର-ଧାରୀ ବିଜିତ ରାଜା ସେ ସହରରେ ଅଛନ୍ତି)। ସେ ସବୁ ଶରତ କାଳରେ ବର୍ଷାରେ ଜଳଶୂନ୍ୟ ହୋଇ ଆକାଶରେ ଭାସୁଥିବା ଧଳା ବଉଦ ପରି ହୋଇଛି । ତାପରେ ଘୋଡ଼ାମାନଙ୍କର ମୁଣ୍ଡରେ ଯେଉଁ ଧଳା ଚାମର ସବୁ ଅଛି କମ୍ବା ଧଳାଘୋଡ଼ାଙ୍କ ବେକର ଶ୍ୱେତକେଶର ସବୁ ଶରତକାଳରେ ଫାଟିକରି ବାହାରି ପଡ଼ିଥିବା କାଶତଣ୍ଡୀ ଫୁଲମାନଙ୍କ ପରି ଦିଶୁଛି । ତାପରେ ଶରତକାଳରେ ଛତିଅନା ଗଛରେ ଫୁଲ ହୁଏ ଓ ସେହି ଫୁଲ ଓ ତା କ୍ଷିରରୁ ଯେଉଁ ଆମୋଦ ବାହାରେ ଏଠାରେ ଥିବା ଅତି ଉଦ୍ଦାମ ମଦ-ବାରି ସୁବାସିତ ହସ୍ତୀମାନଙ୍କ ଗଣ୍ଡରୁ ବାହାରୁଥିବା ସୁବାସ ତାହାରି ପରି ହୋଇଛି । ପୁଣି ଦେଖ, ଭୌମ ବଂଶର ଶେଷ ନାରୀସମ୍ରାଟ ଦଣ୍ଡୀ ମହାଦେବୀଙ୍କ ଲେଖାରେ ଅଛି—

"ଉଦ୍ୟାନେଷୁ ଶିଳୀମୁଖା ବଳାରବୋ ହାରେଷୁ ମୁକ୍ତାସ୍ଥିତି
ର୍ଦୋଷାସଙ୍ଗରୁଚି ସ୍ତୁଷାରକରଣେ ବକ୍ଷେଷୁ ସନ୍ଦେହତା
ସ୍ତ୍ରୀଣାଂ ତୀକ୍ଷଣକରଗ୍ରହଃ କୁମଣିଷୁ ହାସୋଦୟଃ କେବଳଂ
କାନ୍ତାକୁନ୍ତଳ ସନ୍ତତୌ କୁଟିଳତା ଯସ୍ୟାଃ ପ୍ରଭୁତ୍ୱେ ଭୁବି"

ଏହାର ଅର୍ଥ ହେଉଛି, ଏହାଙ୍କ ରାଜତ୍ୱରେ ଶିଳୀମୁଖା ବଳାରବୋ (ଶରମାନଙ୍କର ଶନ ଶନ ଶବ୍ଦ, ବା ଶ୍ଳେଷାର୍ଥେ ଭ୍ରମରମାନଙ୍କ ଗୁଞ୍ଜନ ଶବ୍ଦ, ଶିଳୀମୁଖ=ଶର,ଭ୍ରମର) କେବଳ ଉଦ୍ୟାନରେ ଅଛି (ଯୁଦ୍ଧ ନାହିଁ)। ମୁକ୍ତା(ସ୍ୱୈରିଣୀ ନାରୀ, ମୋତି କେବଳ ହାରରେ ଅଛି (ନାରୀଙ୍କର ଯୌନ ଚରିତ୍ର ସ୍ଖଳନ ନାହିଁ)। ଦୋଷା (ଦୋଷଯୁକ୍ତା ନାରୀ ବା ରାତ୍ରି; ରାତି) ସଙ୍ଗ"

କରିବାର ରୁଚି କୌଣସି ପୁରୁଷଠାରେ ନାଇ । ଏହା କେବଳ ତୁଷାର କିରଣ (ଚନ୍ଦ୍ର)ଠାରେ ଅଛି । ଶିଷ୍ଟଙ୍କ ଉତ୍ତମ ବେଶ ପରି-ଧାନ ମାନବରେ ସଦ୍ବେଷତା ଅଛି (ଦ୍ୱେଷ ନାଇ) । ତୀକ୍ଷ୍ଣକର ଗ୍ରହ (ତୀବ୍ରତାରେ ଝଗଡା ନେବା, ସୂର୍ଯ୍ୟଙ୍କୁ ଗ୍ରାସ କରିବା) କେବଳ ରାହୁଠାରେ ଅଛି (ଦେଶରେ କରଭାର ନାଇ) । ହାସୋଦୟ (ଭୟ) କେବଳ କୁମଣି ବା ଝରାପ ରତ୍ନରେ ଅଛି (ଭୟ ଆଉ କୁହାପି ନାଇ, ଲୋକେ ସମସ୍ତେ ଧନୀ ଥିବାରୁ କେବଳ ଝରାପ ମଣି କଣା ହୋଇ ପାରିବ ନାଇ ବୋଲି ଡରୁଚି) । କୁଟିଳତା (ଖଳପ୍ରକୃତି, କୁଞ୍ଚୁକୁଞ୍ଚିଆ ଭାବ) କେବଳ ସୁନ୍ଦରୀ ରମଣୀମାନଙ୍କର ବାଳରେ ଅଛି (କୁଟିଳ ଚରିତ୍ରର ଲୋକ କେହି ନାହାନ୍ତି) ।

ଏହି ଶୈଳୀ ସଙ୍ଗେ ଠିକ୍ ସେତିକିବେଳେ ପୂର୍ବ ଭାରତ ବଜ୍ରଯାନର ଧର୍ମଭାଷା ହେଉଚି 'ଉଡ୍ଡୀୟାନ' ବା ଓଡ଼ିଶାର ପ୍ରାକୃତ । ଏହିଠାରେ ଓଡ଼ିଶାର ସଂଯମ ପନ୍ଥା ଯେଉଁ ନିଜର ପଞ୍ଚମକାର ସେବିତ ଶରୀର ସାଧନାକୁ ପ୍ରତିଷ୍ଠା ଦେବାର ଉଦ୍ୟମ ସଙ୍ଗେ ସଙ୍ଗେ ଓଡ଼ିଆ ସାଧନାକୁ ସେହି ପଞ୍ଚମକାରର ଛିଦ୍ରାଯୋନି ସେବାରେ ଯେ ପ୍ରଭାବିତ କରିବାର ଉଦ୍ୟମ ହୋଇଥିଲା କଥା ଅନୁର ନରମ କରି କହିଲେ, ସେହି ସୂତ୍ରରେ ଓଡ଼ିଶାର ସାଧନା ଯେ ଛିଦ୍ରାଯୋନି ସେବାର ପ୍ରଭାବରେ ପ୍ରଭାବିତ ହୋଇଥିଲା, ଏହା ବୁଝିବାରେ ଅସୁବିଧା କିଛି ନାଇ ।

ଏତକ ବେଳେ କୋଶଳକେଶରୀମାନଙ୍କ ଅଳ୍ପକାଳର ଓଡ଼ିଶା ଅଧିଷ୍ଠାନ କଥା ସାହିତ୍ୟ ବିକାଶଧାରାରେ କିଛି କହିବାର ସାଧନ ନାଇ, ମାତ୍ର ସେ କାଳ ବଡ଼ ଅଳ୍ପ । ଦେଖାଯାଉଅଛି, ଏହି କୋଶଳକେଶରୀମାନେ ପ୍ରଥମରୁ ବହୁକାଳଯାଏ ସୋନପୁରରୁ

ସମଗ୍ର ଓଡ଼ିଶାକୁ ଶାସନ କରୁଥିଲେ । ଏତକ ମାତ୍ର ଦେଖାଯାଏ ଯେ, ସେତେବେଳେ ହୁଏତ ତାନ୍ତ୍ରିକତାର ପ୍ରବେଶ ବଡ଼ ବେଶି ନ ଥିଲା । କାହିଁକି ନା, ସେ କାଳରେ ଶିବଙ୍କ ସଙ୍ଗେ ଦେବୀ ଏ ଦେଶରେ ବିଶେଷ ପ୍ରବେଶ କରିବାର ଦେଖାଯାଉନାହିଁ । ଦେବୀ ବା ତନ୍ତ୍ର ନଥିଲେ କାହ୍ନଯୋଗୀ ସେବାକଥା ଭାବିବା ଏବେ କାଠିକର ପାଠ । ଏହି ପ୍ରାଚୀନ କାଳର ଲିଖିତ ବା କଥିତ ସାହିତ୍ୟ ସ୍ପଷ୍ଟ ଜଣାପଡ଼ୁ ନଥିଲେ ମଧ୍ୟ ଦେଖାପଡ଼ୁଛି ଶିଳ୍ପ । ଅତି ପ୍ରାଚୀନ କାଳରୁ ଏଠାରେ ବୌଦ୍ଧଙ୍କୁ ଭାଙ୍ଗି ଶିବ ଓ ବୈଷ୍ଣବ ମନ୍ଦିରମାନ ପ୍ରତିଷ୍ଠିତ ହୋଇଥିଲା । ଅଶୋକସ୍ତମ୍ଭ ଭାଙ୍ଗି ଭୁବନେଶ୍ୱରର ମେଘେଶ୍ୱର ତିଆରି କରିବା ଏହି ସମୟର କଥା । ମାତ୍ର ଏହି ସମୟର ଆଦିମ ମନ୍ଦିର ପରଶୁରାମେଶ୍ୱର ଓ ତାହାର ପରବର୍ତ୍ତୀ ମୁକ୍ତେଶ୍ୱର ପ୍ରଭୃତିର ମନ୍ଦିର ଦେଖିଲେ ଶିଳ୍ପର ସରଳତା ଓ ଅତି ଶୋଭନ ସମାବେଶ ଦର୍ଶକର ଦୃଷ୍ଟିକୁ ଦିବ୍ୟ ଭାବରେ ପ୍ରଭାବିତ କରେ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଏହାର ଶେଷ ପ୍ରସ୍ଥ (Stage)ର କୀର୍ତ୍ତି । ଏଥିରେ ଅଶ୍ଳୀଳ ମୂର୍ତ୍ତି ପଶି ପାରିନାହିଁ କହିଲେ ହୁଏ ।

ଏହାପରେ ଆସିଥିଲେ ଗଙ୍ଗମାନେ । ଅଳଙ୍କାର-ସାହିତ୍ୟ ସଙ୍ଗେ ଜଗନ୍ନାଥ, କୋଣାର୍କ ପ୍ରଭୃତିର ଶିଳ୍ପ କୌଶଳ ଏତିକିବେଳର କାମ । ଯାହାକୁ ଅଶ୍ଳୀଳତା କହନ୍ତି, ସେ ସବୁ ଅତି ବିସ୍ତୀର୍ଣ୍ଣଭାବରେ ଏତିକିବେଳେ ଶିଳ୍ପରେ ପ୍ରକାଶ ପାଇଥିଲା । ଅଳଙ୍କାରଶାସ୍ତ୍ରକୁ ଧରି ଓଡ଼ିଆରେ ସେତେବେଳେ ବି କାବ୍ୟ କବିତା ଲେଖାଯାଇଥିଲା, ତାହା ଏବେ ବି ମିଳି ନାହିଁ । କିନ୍ତୁ ଗୋଟିଏ କଥା ଜଣାଯାଇଛି, ତାହା ହେଉଛି ଗଙ୍ଗମାନଙ୍କର ଦକ୍ଷିଣୀ ବା କର୍ଣ୍ଣାଟୀ ସଙ୍ଗୀତ ।

ଆମର ସମସ୍ତ ଛନ୍ଦ ଫୁଟିଛି ଏଇ ସଙ୍ଗୀତରୁ । ଏଇ ସଙ୍ଗୀତରୁ ଛନ୍ଦସବୁ ଆମ ପୂର୍ବପୁରୁଷେ କାଢ଼ି ଫୁଟାଇଚନ୍ତି ତାହା ପୁଙ୍ଖାନୁପୁଙ୍ଖ ପ୍ରକାଶ କରି ଗ୍ରନ୍ଥମାନ ଲେଖାଯାଇଛି । ସେହି ଗ୍ରନ୍ଥମାନଙ୍କର ନାମ 'ପ୍ରବନ୍ଧ' । କିନ୍ତୁ ସେ ସବୁର ବିଶେଷ ଆଲୋଚନା ବୋଧହୁଏ ଓଡ଼ିଶାରେ ଏ ପର୍ଯ୍ୟନ୍ତ ହୋଇନାଇ । ସେ ଯାହାହେଉ, କର୍ଣ୍ଣାଟୀ ସଙ୍ଗୀତର ପ୍ରଭାବରେ ଅଳଙ୍କାର ତଥା ଭାବପ୍ରକାଶର ଧାରା ଧରି ଛନ୍ଦପରି ସାହିତ୍ୟ ଫୁଟାଇବା ସଂସ୍କୃତ ପ୍ରଭାବିତ ଓଡ଼ିଆ ପ୍ରାକୃତର ଅତି ମହାମାଯ୍ଯ ବିଶେଷତ୍ୱ । ଭୌମ ଲେଖ ତଥା 'ନୈଷଧ'ରୁ ଛନ୍ଦପରି ଅଦ୍ଭୁତ ଜିନିଷ ଫୁଟାଇ ସାହିତ୍ୟ ଚିନ୍ତା ତଥା ଶିଳ୍ପର ସ୍ୱାତନ୍ତ୍ର୍ୟ ପ୍ରକାଶ କରିବା ଏକା ଓଡ଼ିଆଠାରେ ସମ୍ଭବ ହୋଇଛି ।

ଓଡ଼ିଶା ଅବଶ୍ୟ ସେତେବେଳେ ରାଜନୀତିକ ଭାବରେ ସ୍ୱାଧୀନ ନ ଥିଲା । ମାତ୍ର ମନେ ରଖିବାର ଅଛି, ସେତେବେଳେ ରାଜନୀତି ସଙ୍ଗେ ଜୀବନ କ୍ରିୟାର ବିଶେଷ ସମ୍ପର୍କ ନ ଥିଲା । କିନ୍ତୁ ଗୋଟିଏ କଥାରେ ସମ୍ପର୍କ ଯେ ଥିଲା ତାହା ଅସ୍ୱୀକାର କରି ହେବ ନାଇ । ତାହା ହେଉଛି ଧର୍ମ ଭୌମକାଳର ଧର୍ମବିଶ୍ୱାସ ଓ ଧର୍ମ ପ୍ରଭାବ ଏବେ ଆଉ ନ ଥିଲା । ଗଙ୍ଗମାନେ ଓଡ଼ିଶାକୁ ଆସିବା ସଙ୍ଗେ ସଙ୍ଗେ ଧର୍ମରୁ ଦର୍ଶନ ସମ୍ପର୍କ ତୁଟିଯାଇ ମୁସଲମାନର ଅବାନ୍ତର ବା ଅପ୍ରତ୍ୟକ୍ଷ ପ୍ରଭାବରେ ଏହା ହେଲା ପୂର୍ବାପୂର୍ବ ଭକ୍ତିଧର୍ମ । 'କ୍ଷେତ୍ରମାହାତ୍ମ୍ୟ' ପଢ଼ିଲେ ଦେଖାଯାଏ, ଖାଲି ଈଶ୍ୱରଙ୍କର ସ୍ତୁତି ଓ ସେହି ସୂତ୍ରରେ ଅତି ଅବାନ୍ତର ଅସଙ୍ଗତ କଥା ସବୁ । ସ୍ତୁତି କରି କରି ହେବ ସହସ୍ରେ ଅଶ୍ୱମେଧର ଫଳ । ଦାନ କରି କରି ଗାଈଙ୍କ ଖୁରାଗାତରେ ହେବ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀ । ମୋଟ କଥା, ସେହିଠାରୁ ଭାରତର ଦର୍ଶନ ଉପରେ ପ୍ରତିଷ୍ଠିତ ଧର୍ମ, ସେ ଜଗନ୍ନାଥର ନାଥ ବା ଜୈନଧର୍ମରେ କୈବଲ୍ୟ

ହେଉ ବା ବଜ୍ରଯାନର କହ୍ନାଯୋନି ସେବାରେ ସିଦ୍ଧି ହେଉ, ଏକ ପ୍ରକାର ଲୋପ ପାଇଲା । ପତିତପାବନ ଧର୍ମର ସ୍ରୋତ ମାନରେ ଭାରତ ଧର୍ମ ତଥା ଓଡ଼ିଶାର ଧର୍ମ ପରିବର୍ତ୍ତିତ ହେଲା ।

ଏତିକ ବେଳେ ଦାର୍ଶନିକତା ଓ ଶରୀର ସାଧନାର ଛାୟା ଧରି ଶୂନ୍ୟଧର୍ମୀ ବଜ୍ରଯାନୀମାନଙ୍କର ପରିଣତ ହେଲା ହୀନ ତନ୍ତ୍ରରେ । ଗଙ୍ଗମାନଙ୍କ ସମୟରେ ମୁଖ୍ୟତଃ ଏହି ତନ୍ତ୍ର ପ୍ରଭାବ ଓଡ଼ିଶାରେ ବ୍ୟାପିଲା । ଶିଳ୍ପରେ ତାହା ସ୍ପଷ୍ଟ । ମାତ୍ର ଅନ୍ୟ-ଦିଗରେ ମୁଖ୍ୟଭାବରେ ଦେବଦାସୀଙ୍କ ସଙ୍ଗୀତ ସୂତ୍ରରେ ପଶିଲା, ସ୍ପର୍ଶିଲା । ଓଡ଼ିଆମାନେ ଠିକ ସେହି ପ୍ରଭାବରେ ଛନ୍ଦମାନ ବାହାର କଲେ । ଭକ୍ତିଧର୍ମର ଛାୟା ଏଥିରେ କଥଞ୍ଚିତ ଥିଲେହେଁ, ଏହା ପୂର୍ବପୂରି ଯେ ବାଟ ଧରିଥିଲା ପରି ମନେ ହେଉନାଇ । ପଣ୍ଡିତମାନେ ଛନ୍ଦର ବାହ୍ୟ ଅଭିବ୍ୟକ୍ତିରେ ମନ ଦେଲେ । ତାନ୍ତ୍ରିକ ଅଶ୍ଳୀଳତା ପ୍ରତି ତାଙ୍କର ଯେ ସାହିତ୍ୟର କ ଦୃଷ୍ଟି ଥିଲା କହିବାର ସାଧନ ନାଇ । ଦେଖିଥିବ, ଏତେ ବଡ଼ ଗାନ୍ଧୀଯୁଗ ଗ୍ଳଲଗଲା, କିନ୍ତୁ ଗାନ୍ଧୀଙ୍କ ଜୀବଦ୍ଦଶାରେ ତାଙ୍କ ଯେଉଁ ପ୍ରାୟ ସାହିତ୍ୟ ପ୍ରକାଶ ପାଇନାଇ । ମାତ୍ର ଏବେ ତା'ର ପରିଣାମରେ ଆମେ ଶରକାଳର ଦାର୍ଶନିକ ଉପାସନା ଛାଡ଼ି ପ୍ରତି ସ୍କୁଲରେ ଆଜ 'ପ୍ରାର୍ଥନା'ରେ ତଥା 'ସମ୍ପୂର୍ଣ୍ଣ'ରେ ମନଦେବା ଆରମ୍ଭ କଲୁଣି । ଏ କଥା ଠିକ ସେହିପରି । ଗଙ୍ଗକାଳରେ ଯାହା କିଛି ତାନ୍ତ୍ରିକ ଅଶ୍ଳୀଳତା ଥିଲା ତାହା ସବୁ ଶିଳ୍ପରେ, ହୁଏତ ଛନ୍ଦରେ ନୁହେଁ; କିନ୍ତୁ ପରବର୍ତ୍ତୀ କାଳରେ ଛନ୍ଦରେ ତନ୍ତ୍ର ପ୍ରଭାବ ଯେ ପଶିଥିଲା, ସେଥିରେ ନାହିଁ କରିବାର କିଛି ନାଇ ।

ଠିକ ଏତିକବେଳେ ଆସିଲା ସାରଳା ଦାସ ଯୁଗ । ଏହି ଯୁଗହିଁ କପିଳେନ୍ଦ୍ର ଦେବ ଯୁଗ । ଓଡ଼ିଆ କପିଳ ଗଜପ

ହେଲେ କପିଳେନ୍ଦ୍ର ଦେବ ନାମରେ ସମ୍ରାଟ ଓ ଓଡ଼ିଆ 'ଶୂଦ୍ର' ବା 'ସୁଧ' ସିଦ୍ଧେଶ୍ୱର ପରିଡ଼ା ହେଲେ ମହାକବି ସାରଳା ଦାସ । କପିଳେନ୍ଦ୍ର ଦେବ ବରିଷ୍ଠ ସମ୍ରାଟ ହେଲେହେଁ ଜନ ଚିତ୍ତରେ ତାଙ୍କର ଆଜି ତାଦୃଶ ମମତା ନାଇ । ସେ ଜଗନ୍ନାଥସେବୀ ହେଲେହେଁ ଗଙ୍ଗଯୁଗରେ ଦେଶରେ ଯେଉଁ ସ୍ପଷ୍ଟ ଭକ୍ତିଧର୍ମ ପଶି ଥିଲା ସେ ଜଗନ୍ନାଥଙ୍କର ସେହିପରି ଭକ୍ତ, ଅଥଚ ସେ ଭକ୍ତିରେ ଦେହ ସାଧନାର ପୁଣ୍ୟ ନାଇ କି ସିଦ୍ଧିର ମୁକ୍ତି ନାଇ । ଏ ଧବୁଟିରେ ହୁଏତ ଲକ୍ଷିତ ସାହିତ୍ୟ ହିସାବରେ ବହୁତ କଥା ଅଲେଖା ଅଛି । କେତୋଟି ଶିଳାଲେଖ ଛଡ଼ା ଜାଣିବାର ଅନ୍ୟ ସାଧନା ନାଇ ।

କିନ୍ତୁ ମହାକବି ସାରଳା ଦାସଙ୍କ ସମ୍ବନ୍ଧରେ ତାହା ନୁହେଁ । ବହୁ ପ୍ରକ୍ଷେପ ଭିତରେ ସାରଳା ଦାସ ଆଜି ଜାଜ୍ଜ୍ୱଲ୍ୟମାନ ହୋଇ ଅଛନ୍ତି । ଦେବୀସ୍ତୁତି ତାଙ୍କ କାବ୍ୟରେ ଯତ୍ର ତତ୍ର ଅଛି; କିନ୍ତୁ ସେଥିରେ ତନ୍ତ୍ରର ବୀଭତ୍ସତା ନାଇ । ଏହି ବୀଭତ୍ସତା ଓ ଅଶ୍ଳୀଳତାକୁ ସେ ଯେ କି ପୁରୋଦୃଷ୍ଟିରେ ପ୍ରତିରୋଧ କରିବାପାଇଁ ଅସାମାନ୍ୟ ନାରୀ ଚରିତ ଫୁଟାଇଚନ୍ତି, ତାହା ଆଜି ଦେଖିଲେ ବୁଝିପାରିବା କଷ୍ଟ । ଏ ହିସାବରେ ସାରଳାଙ୍କ ଯୁଗ ଓଡ଼ିଆଙ୍କର ଏକ ଯଥାର୍ଥ ଜାତ୍‌ବୋଧ ଯୁଗ ।

ରାଜନୀତିକତା ତଥା ଧର୍ମ ପରାଧୀନତା ଏଥିରେ ଆଦୌ ନାଇ । ସ୍ୱରଶିଳ୍ପ ପ୍ରତି ଦୃଷ୍ଟି ନାଇ । ସାରଳାଙ୍କ ଲେଖା ପୂରା ଓଡ଼ିଆ । ଅଶ୍ଳୀଳତାର ଏଥିରେ ସ୍ପର୍ଶ ନାଇ । ଏହା ତାଙ୍କର ନାରୀ ଚରିତ୍ର ଚିତ୍ରଣରେ ସ୍ପଷ୍ଟ । ପୂର୍ବ-ଭାରତର ଯେଉଁ 'ବ୍ରଜଯାନ', ତନ୍ତ୍ର ସଙ୍ଗେ ମିଶି ଏକାକାର ହୋଇ 'ସହଜଯାନ' ତଥା 'କୌଳ-ଧର୍ମ'ରେ ଆତ୍ମପ୍ରକାଶ କରି ଜୈନନାଥ ନାମରେ ନାଥପନ୍ଥୀଙ୍କ

ରହସ୍ୟ ଧର୍ମରେ ପରିଣତ ହୋଇ ଘୋର ଶୂନ୍ୟ ସାଧନା ତଥା ସିଦ୍ଧି ଦ୍ୱାରା ମୁକ୍ତି ସାଧନାର ଦର୍ପ କରୁଥିଲା, ସେଥିରେ ଯଥାର୍ଥରେ ନାରୀ ମନୁଷ୍ୟ ନ ଥିଲା । ସେ ବଜ୍ରାହରେ ସହଧର୍ମିଣୀ ନ ଥିଲା । ସେ ଥିଲା ପୁରୁଷର ଭୋଗ୍ୟ ବସ୍ତୁ । ନିଜେ ଖ୍ରୀଷ୍ଟ ସପ୍ତମ ଶତାବ୍ଦୀ ଶେଷ ବା ଅଷ୍ଟମ ଶତାବ୍ଦୀ ପ୍ରାରମ୍ଭରେ ପୂର୍ବ ମଗଧର ପାଳସମ୍ରାଟ ପୁତ୍ର ତଥା କଥିତ ସିଦ୍ଧ ଅନଙ୍ଗବଜ୍ର ନିଜ 'ପ୍ରଜ୍ଞୋପାୟ ବିନିଶ୍ଚୟ ସିଦ୍ଧି'ରେ ଲେଖିଛନ୍ତି—

"ପ୍ରଜ୍ଞାପାରମିତା ସେବ୍ୟା ସର୍ବଥା ମୁକ୍ତିକାଂକ୍ଷିଭିଃ
ପରମାର୍ଥେ ସ୍ଥିତା ଶୁଦ୍ଧା ସମ୍ବୃତ୍ୟା ତନୁଧାରିଣୀ
ଲଲନାରୂପମାସ୍ଥାୟ ସର୍ବତ୍ରୈବ ବ୍ୟବସ୍ଥିତା
ବ୍ରାହ୍ମଣାଦିକୁଲୋତ୍ପନ୍ନାଂ ମୁଦ୍ରାଂ ବୈ ଅନ୍ତ୍ୟଜୋଦ୍ଭବାଂ
ଜନୟିତ୍ରୀଂ ସ୍ୱସାରଂ ଚ ସ୍ୱପୁତ୍ରୀଂ ଭାଗିନେୟିକାଂ
କାମୟନ୍ ତତ୍ତ୍ୱଯୋଗେନ ଲଘୁ ସିଧ୍ୟେତ୍ସାଧକଃ ।"

(ପୃଷ୍ଠା ୨୨-୨୦) ଏଠାରେ 'ମୁଦ୍ରା'ର ଅର୍ଥ ମାଇକିନିଆ । (ଅଧ୍ୟାପକ ବିନୟତୋଷ ଭଟ୍ଟାଚାର୍ଯ୍ୟଙ୍କ 'ସାଧନାମାଳା' ମୁଖବନ୍ଧ ୭୯ ପୃଷ୍ଠା ଦ୍ରଷ୍ଟବ୍ୟ ।)

ଉପର ଶ୍ଳୋକ ଶେଷକୁ କୁହାଗଲା ଏହି ଲକ୍ଷିତ ମାଇକିନିଆମାନଙ୍କୁ ତତ୍ତ୍ୱଯୋଗରେ କାମନା କଲେ ସାଧକ ଅତି ବେଗରେ ଓ ସହଜରେ ସିଦ୍ଧ ହୁଏ । ଏହି ତତ୍ତ୍ୱଯୋଗର ପ୍ରଣାଳୀ ଓ ପ୍ରକ୍ରିୟାକୁ ବର୍ଣ୍ଣନା କରି ଠିକ ପରପୃଷ୍ଠାରେ ସେହି ଗ୍ରନ୍ଥରେ ପୁଣି ଅନଙ୍ଗବଜ୍ର ଲେଖିଛନ୍ତି—

"ମୁଦ୍ରାଲିଙ୍ଗନତ   ସଂଯୋଗାତ୍ ବଜ୍ରାବେଶପ୍ରବର୍ତ୍ତନାତ୍
ସର୍ଷୀସ୍ଥାରସ୍ଥାନାତ୍ଚ   ତତ୍କଣ୍ଠଧ୍ୱନଦୀପନାତ୍
ବପୂଲାନନ୍ଦ ସଂଭୋଗାତ୍ ତଦୂର୍ଦ୍ଧ ,ସ୍ପୋଟନାତ୍ ଧ୍ରୁବଂ
ନ ଚ୍ୟୁତ ମନୁଥୋ ଗଜା ବଜ୍ର ସଙ୍ଗଃ ପ୍ରସିଦ୍ଧ୍ୟତି ।"

ଏଠାରେ 'ବଜ୍ର' ବୋଇଲେ ପୁରୁଷର ଜନନେନ୍ଦ୍ରିୟ ।

ଏହି 'ସହଜଯାନ' ଓ 'କୌଳ' ଧର୍ମରେ ନାରୀ କଥା ଏତେ କୁହାଗଲେ ମଧ୍ୟ ଏଥିରେ ନାରୀର ସ୍ୱାତନ୍ତ୍ର୍ୟ ନାଇ । ପୁରୁଷ ନିଜର ମୁକ୍ତିପାଇଁ, ସିଦ୍ଧିପାଇଁ ବା ହଠଯୋଗରେ ଫଳଲାଭ ପାଇଁ ଯତ୍ର ତତ୍ର ନାରୀକୁ କାମନା କରିବ ମାତ୍ର । ଏହା କେବଳ ସାହିତ୍ୟ ବା ଶିଳ୍ପରେ ଅଶ୍ଳୀଳ ନୁହେଁ, ଏହା ବ୍ୟବହାରରେ ମଧ୍ୟ ଅଶ୍ଳୀଳ ଓ ବୀଭତ୍ସ ।

ଏହାର ପାଖେ ସ୍ୱାଧୀନ ଓଡ଼ିଆ ସାରଳା ଦାସଙ୍କ ନାରୀଚରିତ୍ରର ଚିତ୍ର କି ସ୍ପଷ୍ଟ, କି ଉଜ୍ଜ୍ୱଳ ! ହୁଏତ ପରିସ୍ଥିତି ଏଥିରେ ଅପେ ଅପେ ତିଆରି ହୋଇ ସାରଳା କପିଳେନ୍ଦ୍ରଙ୍କ ଆଗେ ସାଂଖ୍ୟର ପ୍ରକୃତି ପରି ବେଶ ଦେଖାଇ ନାଚୁ ନାଇ । ଓଡ଼ିଆ ମହାକବି ହୁଏତ ଜ୍ଞାତ ବା ଅଜ୍ଞାତ ଭାବରେ ଇତିହାସ ଓ ପୁରୋଦୃଷ୍ଟିର କଳନାରେ ପାରିପାର୍ଶ୍ୱିକତାର ଯଥାର୍ଥ ଅବବୋଧ ଧରି ଜାତିପାଇଁ ଏ ପରିସ୍ଥିତି ତିଆରି କରିଚନ୍ତି । ସାରଳାଙ୍କ ନାରୀ କେବଳ ସହଧର୍ମିଣୀ ନୁହେଁ, ସେ ଯେପରିକି ହେଉଚି ଏକମାତ୍ର ଧର୍ମିଣୀ । ପୁରୁଷ ହେଉଚି ତା'ର ସହଧର୍ମା । ସେଇ ନାରୀ ହେଉଚି ସମାଜର ନେତୃରୂପିଣୀ । ପୁରୁଷ ଏହାକୁ କାମନା କରିବାର ଆରମ୍ଭ କଲେ ତାହାର ସର୍ବଶକ୍ତି ନଷ୍ଟ ହୁଏ—ତନ୍ତ୍ରଯୋଗରେ କାମନା କରି ସେ ସର୍ବସିଦ୍ଧି ପାଏ ନାଇ ।

ଉଦାହରଣମାନ ଏଠାରେ ସ୍ପଷ୍ଟ:—ମହାଭାରତରେ ଭୀଷ୍ମ, ଶିଖଣ୍ଡୀକୁ ଦେଖିବା ମାତ୍ରେ ତାଙ୍କ ମନେ ପଡ଼ିଲା, ଯୁବତୀ ଅମ୍ବା । ଅମ୍ବା ତାଙ୍କୁ ପତିରୂପେ ପାଇବ ବୋଲି କାମନା କରି, ନ ପାଇ ଆତ୍ମହତ୍ୟା କରିଥିଲା ଓ ପରେ ଶିଖଣ୍ଡୀରୂପେ ଜନ୍ମ ପାଇଥିଲା । ଏହା ଭୀଷ୍ମ ଜାଣିଥିଲେ । ସେଇ ଶିଖଣ୍ଡୀଙ୍କୁ ଅତି ବୃଦ୍ଧ ବୟସରେ, ରଣକ୍ଷେତ୍ରରେ ଦେଖିବା ମାତ୍ରେ ତାଙ୍କ ଅଙ୍ଗପ୍ରତ୍ୟଙ୍ଗ ଶିଥିଳ ହୋଇପାଇଥିଲା ଓ ସେ ଅତି ସହଜରେ ଅର୍ଜୁନଙ୍କ ଶରବ୍ୟ ହୋଇଥିଲେ ।

ତା ପରେ ଦେଖ 'ଚଣ୍ଡୀପୁରାଣ' । ସେଠାରେବି ସେଇଆ । ମହିଷାସୁର ପରି ଦୁର୍ଦ୍ଧାନ୍ତ ବୀରପୁରୁଷ ହତବୀର୍ଯ୍ୟ ହୋଇ ନିରସ୍ତ ହେବାର କାରଣ ହେଉଛି ସୁରୂପିଣୀ ଦେବୀଙ୍କ ଜନନେନ୍ଦ୍ରିୟର ଦର୍ଶନ । ପୁଣି ଦେଖ—ବାଲ୍ମୀକି ରାମାୟଣର ସହସ୍ରମୁଖୀ ରାବଣ । ରାମ ତାଙ୍କୁ ପାରିଲେ ନାହିଁ । ସୀତାଙ୍କୁ ଡାକି ବଧ କରିବେ ବୋଲି ପ୍ରାର୍ଥନା କଲେ । ସୀତା ସୁନ୍ଦରୀ ଯୁବତୀ ରୂପରେ ତାଙ୍କ ଆଗେ ଠିଆ ହୋଇଗଲେ । ସେତିକି ଦେଖି ତା'ର ବୀରତ୍ୱର ଅବସାନ । ତେଣିକି ରାମ ତାକୁ ମାରିବାରେ ଆଉ କିଛି ଅସୁବିଧା ହେଲା ନାଇ ।

ଏ ସବୁ ପୁଣି କାହାର ? ଓଡ଼ିଆର ନାରୀ । ସେ ନାରୀ ସତୀ ହେଲେହେଁ ଏକପତିବ୍ରତ ତା'ର ଅକାଟ୍ୟ ଧର୍ମ ନୁହେଁ । ଶରକାଳ, ଓଡ଼ିଆ ଯାଦବ ନାରୀଙ୍କର ବିଧବା ବିବାହ ବା 'ଦୁତିଅ' ଅଛି । ଅନ୍ତତଃ ସାମାଜିକ ଭାବରେ ଏହାର ନିଷେଧ ନାଇ । କିନ୍ତୁ ଯଥାର୍ଥ ସତୀତ୍ୱ ଏହିପରି ସମାଜରେହିଁ ସମ୍ଭବ । ବ୍ୟତ୍ୟୟ ପାଇଁ ଅବକାଶ ନିରୁଦ୍ଧ ହେଲେ ସାଧୁତାର କୌଣସି ଅର୍ଥ ବା ମୂଲ୍ୟ ନାଇ । ଏହା

ସମୁଦ୍ର ପାରରେ ବାଣିଜ୍ୟପ୍ରବଣ ଓଡ଼ିଆ ବୁଝିଥିଲେ । ଏବେ ବି ସମୁଦ୍ର ପାରରେ ବାଣିଜ୍ୟ ନ ଥିଲେ ମଧ୍ୟ କର୍ପୂର ଗନ୍ଧଣି; ହୁଏ ତ ଭଜାଣେ ଗଡ଼ଉ ।

ସାରଳା ଦାସଙ୍କ ଏହି ନାମ୍ବରିତ ଏକାବେଳକେ ଭାରତ ଇତିହାସରେ ଅନନ୍ୟସାଧାରଣ । ସରଳା ଯଥାର୍ଥ ଓଡ଼ିଆ ଥିବାର ଅନ୍ୟ ପ୍ରମାଣମାନ ମଧ୍ୟ ଅତି ସ୍ପଷ୍ଟ । ସେ ହୁଏ ତ ଉତ୍ତର ବା ଦକ୍ଷିଣ ଭାରତ ଦେଖି ନ ଥିଲେ । ଓଡ଼ିଶାର ପଞ୍ଚକଟକହିଁ ତାଙ୍କର ହସ୍ତିନା, ଇନ୍ଦ୍ରପ୍ରସ୍ଥ, ବାରାଣସୀ ମିଥିଳା କଟକ ବା ସହରମାନ ବୋଲି ସେ ବୁଝିଥିଲେ ବା ବର୍ଣ୍ଣନା କରିଥିଲେ । ଢେଙ୍କାନାଳର କପିଳାସ ତାଙ୍କର କୈଳାସ । ପୁରୀର ଜଗନ୍ନାଥ ତାଙ୍କର କୃଷ୍ଣ । ଯୁଧିଷ୍ଠିର ସ୍ୱର୍ଗାରୋହଣ କଲାବେଳେ ଯାଜପୁର ବାଟେ ଯାଇଥିଲେ ଓ ସେଠାରେ ରଘୁ ସାହୁଙ୍କ ଝିଅ 'ସିଂଘାଣି'ଙ୍କୁ ବିଭା ହୋଇ ବାସ୍ତବ ବର୍ଷ ପରିହାର କରିଥିଲେ । ଯାଜପୁରର 'ଭାରଦା'ଙ୍କୁ ଭୀମ ଚୁଟି ଧରି ଟେକିଆଣି ନାନା ଦଣ୍ଡ ଦେଇଥିଲେ । ଏହିପରି ଉଦାହରଣ ଅସଂଖ୍ୟ । ଏହା ଛଡ଼ା ତାଙ୍କର ମହାଭାରତ ସ୍ପଷ୍ଟ ଓଡ଼ିଆ ଜୀବନର ଅଭିବ୍ୟକ୍ତି । ଓଡ଼ିଆ କିମ୍ବଦନ୍ତୀ ସଂଗ୍ରହରେ ଏହା ପୂର୍ଣ୍ଣ । ହିନ୍ଦୁର ସ୍ପଷ୍ଟ ଓ ସ୍ୱାଧୀନ ବିକାଶ ଏଥିରେ ସୁନ୍ଦର ଦେଖାଯାଇ ପାରେ । ପୁନର୍ଜନ୍ମ ଓ କର୍ମଫଳ ଭୋଗରେ ଏହା ଛତ୍ରେ ଛତ୍ରେ ପୂରି ରହିଛି । ଏ ହିସାବରେ ଏକ ପ୍ରକାର ଭାରତ ସାହିତ୍ୟରେ, ବିଶେଷତଃ ପୂର୍ବ-ଭାରତ-ସାହିତ୍ୟରେ ଏହା ଅଦ୍ୱିତୀୟ ।

ମାତ୍ର ଏ ସ୍ୱାଧୀନତାର ବସନ୍ତ ଓଡ଼ିଶାରେ ବେଶି ଦିନ ସ୍ଥାୟୀ ହେଲା ନାହିଁ । କେତେଣ ପୂର୍ବ-ଭାରତର ବଜ୍ରଯାନ ଓ ସହଜିଆ

ଧର୍ମ ଗୌଡ଼ୀୟ ବୈଷ୍ଣବ ଧର୍ମର ରାଧାକୃଷ୍ଣ ରତି ବା ପରକୀୟା ପ୍ରେମରେ ପରିଣତ ହେଲା । ଏଣେ ସ୍ପଷ୍ଟ ଭାବରେ ସଙ୍ଗୀତର ମୂର୍ଚ୍ଛନା ଭିତରେ ଆଲଙ୍କାରିକ ସାହିତ୍ୟର ବିକାଶ କ୍ରମେ ଫୁଟି ଉଠିଲା ।

ଏତିକ ବେଳକୁ ଆସିଲେ ବଙ୍ଗଳାରୁ ଚୈତନ୍ୟ ଦେବ । ସଙ୍ଗେ ସଙ୍ଗେ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଲା । ଧର୍ମ ଓ ଭାଷାର ପରାଧୀନତା ସାହିତ୍ୟକୁ ପ୍ରଚଣ୍ଡ ଉଦ୍ଦାମତାରେ ଗ୍ରାସ କରି ବସିଲା । ଭକ୍ତିଧର୍ମରେ ଯାହା ସମ୍ଭବ ସେ ସବୁ ଓଡ଼ିଶାର ଦ୍ୱାରରେ ଭୀଷଣ ଭାବରେ ଆଘାତ କଲା । ଏବେ ବି ମହିମା ଗୋସେଇଁଙ୍କଠାରୁ ପାଗଳାବାବାଙ୍କ ପର୍ଯ୍ୟନ୍ତ ଓଡ଼ିଶାରେ ଏଇ ଭକ୍ତିଧର୍ମଗ୍ରୋଦତ ଅଦ୍ଭୁତ କ୍ରିୟାର ପରସୀମା ନାହିଁ କହିଲେ ଚଳେ । ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧ ଓ ଊନବିଂଶ ଶତାବ୍ଦୀର ଆଦ୍ୟ କାଳରେ 'ଦାଢ଼୍ୟତା-ଭକ୍ତି' ପରି ଗ୍ରନ୍ଥ କ ପ୍ରଭାବ ଓ ପ୍ରେରଣାରେ ଦୂର ଗଞ୍ଜାମର 'ଡୁରା' ଗ୍ରାମରେ ସମ୍ଭବ ହୋଇଛି, ତା ବୁଝାଇବା ଦରକାର ନାହିଁ । ଆମେ ଜାଣିବାପାଇଁ ଚୈତନ୍ୟ ହେଉଚନ୍ତି ଏହାର ମୂଳ । ଚୈତନ୍ୟଙ୍କ ସମ୍ବନ୍ଧୀୟ ଲେଖା ଭକ୍ତମାନଙ୍କଦ୍ୱାରା ବହୁପରେ ପ୍ରସ୍ତୁତ ହୋଇଛି । ଚୈତନ୍ୟ ନିଜ ଜୀବନରେ ସଂସ୍କୃତ ଓ ତର୍କଶାସ୍ତ୍ର ପ୍ରଭୃତି ଜାଣିଥିଲେ ବୋଲି କୌଣସି ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନାହିଁ । କେବଳ ସଂକୀର୍ତ୍ତନରେ ତାଙ୍କର, ସେଦିନ ଓଡ଼ିଶାରେ ଆସି ଲୋକଙ୍କୁ ଗୌଡ଼ୀୟ ଧର୍ମରେ ମତାଉଥିବା ଚରଣ ଦାସ ବା ରାଧାରମଣ ଦେବଙ୍କ ପରି ଭାବାବେଶ ହେଉଥିଲେ ଓ ସେଥିରେଇ ଲୋକଙ୍କର ଘୋର ଭକ୍ତିର ଉଦ୍ରେକ ହୋଇ ଲୋକେ ଧନଧାନ୍ୟ, ପୁତ୍ର ପଶୁଠାରୁ ଦୂରେଇ ତଥାକଥିତ ମୁକ୍ତି ପର୍ଯ୍ୟନ୍ତ ସହଜରେ ପାଇଯିବା ପାଇଁ ଭକ୍ତିରେ ଆତ୍ମସମର୍ପଣ କରୁଥିଲେ ।

ଏହି ଗୌଡ଼ୀୟ ଧର୍ମର ହାଓ୍ୱା ହୁଏତ ଚୈତନ୍ୟଙ୍କ ଜନ୍ମକାଳ ପୂର୍ବରୁ ଓଡ଼ିଶାକୁ ଆସିଥିଲା ଓ ପ୍ରତାପରୁଦ୍ରଙ୍କ ଠିକ ପରେ ଓଡ଼ିଆ ବୈଷ୍ଣବମାନେ ରାଧାଙ୍କୁ ବିଶ୍ୱପୁରୁଷଙ୍କର ହ୍ଲାଦିନୀ ଶକ୍ତିର ଅବତାର ବୋଲି ଧାରଣା କରି ନ ପାରି ଜଗନ୍ନାଥଙ୍କ ତ୍ରିମୂର୍ତ୍ତିର ମାତୃଶକ୍ତି ସୁଭଦ୍ରାଙ୍କୁ ହୁଏତ ରାଧା ବୋଲି ଧାରଣା କରି ଜଗନ୍ନାଥଙ୍କଠାରେ ରାଧାକୃଷ୍ଣ ଯୁଗଳମୂର୍ତ୍ତି ଦେଖି ନିଜର ଧର୍ମକୁ ଯୋଗବୈଷ୍ଣବ ବୋଲି କହି ଏକ ନୂତନ ବିଭ୍ରାଟ ସୃଷ୍ଟି କରିଥିଲେ । ଦିବାକର ଦାସ 'ଜଗନ୍ନାଥ ଚରିତାମୃତ' ପୁସ୍ତକର ଚତୁର୍ଥ ଅଧ୍ୟାୟରେ ସ୍ପଷ୍ଟ କରିଅଛନ୍ତି—

"ରାଧା କି ସ୍ୱୟଂ ଜଗନ୍ନାଥ'' (ଶ୍ଳୋକ—୭୧), "ରାଧାରୁ ଝରୁଛି ଜଗତ'' (ଶ୍ଳୋକ—୭୫) । କିନ୍ତୁ ଏଥିରେ ସ୍ୱାଦ୍ୟ ପରକୀୟା ଧର୍ମର ସ୍ରୋତ ଆଉ ନିବାରି ହେଲା ନାହିଁ । କ୍ରମେ କ୍ରମେ ଦେଶରେ ଓ ମନ୍ଦିରେ ମନ୍ଦିରେ ତଥା ଗ୍ରାମେ ଗ୍ରାମେ ସର୍ବତ୍ର ବାବାଜୀ ମାତାଙ୍କର ବୀଭତ୍ସ ଯୌନଲୀଳା ଓ ପରକୀୟା ପ୍ରେମଧର୍ମ ମାତି ଉଠିଲା । ଏହି ଧର୍ମହିଁ ବଡ଼ ସ୍ୱାଦ୍ୟ ଓ ସହଜ । ଏହାହିଁ ପୂର୍ବଭାରତର ସହଜିଆ ଧର୍ମର ଏକ ଭକ୍ତିମୂଳକ ପରିଣତି । କୃଷ୍ଣଙ୍କ ପରକୀୟା ବା ମାଇଁ ରାଧା ଏହି ଧର୍ମରୁ ବାହାରିଛନ୍ତି । ଯମୁନାକୂଳରେ ଯୁବତୀଙ୍କର ବସ୍ତ୍ରହରଣ କଳ୍ପନା ଏହି ଧର୍ମର ଏକ ପ୍ରକାଶ । ଏପରି ବୃନ୍ଦାବନର କୃଷ୍ଣ ତଥା ବୈଷ୍ଣବ ଏହି ଧର୍ମର ପ୍ରସାରରେ ଆତ୍ମପ୍ରକାଶ କରିଅଛନ୍ତି । ଏହି ଧର୍ମ ପ୍ରଭାବରେ ଆଜି ପବିତ୍ର ପୁରୀର ଜଗନ୍ନାଥ ମନ୍ଦିରରେ ସ୍ମାର୍ତ୍ତମାନେ ଅଟା ଆତ୍ମପ୍ରୌଢ଼ୀରେ ଅସ୍ପୃଶ୍ୟଙ୍କୁ ପ୍ରବେଶ ନିଷେଧ କଲେ ମଧ୍ୟ ବୀଭତ୍ସ ବାମାଚାରୀ ତଥା କାମାଚାରୀ ବୈଷ୍ଣବ ବାବାଜୀ ମାତାଙ୍କ ମନ୍ଦିର ପ୍ରବେଶ ପାଇଁ ଦ୍ୱାର ମୁକ୍ତ କରି ଦେଇଛନ୍ତି । ଏହି ଧର୍ମରେ ପଣ୍ଡ

ଆଜି ଓଡ଼ିଶା ଶିକ୍ଷ ପରିବାରମାନଙ୍କର ସହସ୍ର ସହସ୍ର ବିଧବା ବାବାଜୀଙ୍କ ସଙ୍ଗେ ମାତା ହୋଇ ପୁରୀରୁ ନବଦ୍ୱୀପ ଓ ସେଠାରୁ ବୃନ୍ଦାବନକୁ ଯାଇ ଉଦର ପୋଷଣ କରୁଚନ୍ତି । ଏହି ଭକ୍ତି ଧର୍ମରେ ପ୍ରଭାବିତ ହୋଇ ବଙ୍ଗାଳୀ ତଥା ସ୍ୱଦେଶୀ ଓଡ଼ିଆ ମହାପୁରୁଷମାନେ ସ୍ଥାନେ ସ୍ଥାନେ ବାହାରି ଭକ୍ତ ନରନାରୀଙ୍କୁ ଧନଧାନ୍ୟ ଗୋପଲକ୍ଷ୍ମୀଠାରୁ ସନ୍ତାନସମ୍ପଦ ପର୍ଯ୍ୟନ୍ତ ଅକାତରେ ବିତରଣ କରୁଚନ୍ତି ।

ଏଇପରି ବର୍ଣ୍ଣନା କଲେ ସୀମା ରହିବ ନାଇ । ମାତ୍ର ଲକ୍ଷ୍ୟ କରିବାର ଅଛି, ଏହିଠାରୁ ସ୍ପଷ୍ଟ ଭାବରେ ଧର୍ମର ଏଇ ଭାବ-ଧାରା ଯେ କୌଣସି ନାରୀର ଏଡ଼ି ସ୍ୱାଦ୍ୟ ସମାଗମ ସାହିତ୍ୟରେ ପ୍ରବେଶ କଲା । 'ରସକଲ୍ଲୋଳ'ଠାରୁ 'ବିଦଗ୍ଧ ଚିନ୍ତାମଣି' ତଥା ବଳଦେବ କବିସୂର୍ଯ୍ୟଙ୍କ ଚମ୍ପୂର 'ଉଭା ଉଭି' ପର୍ଯ୍ୟନ୍ତ ସବୁ ଏହା ଦେଖି ବସିଲେ ବୀଭତ୍ସତାରେ ସାଧୁ ଓ ଶିଷ୍ଟ ପାଠକଙ୍କୁ ନିର୍ଯ୍ୟାତନା ହେବାକୁ ପଡ଼େ ।

ଏତକକରେ ଲେ ସାହିତ୍ୟରେ ଯଥାସାଧ୍ୟ ଲୋକରୁଚିକୁ ଟେକି ରଖିବାପାଇଁ ଅର୍ଥାତ୍ ସମାଜର ସଂଯମ ଧର୍ମ ପ୍ରତିଷ୍ଠିତ କରିବାପାଇଁ ଭଞ୍ଜ-ସାହିତ୍ୟର ଅବଭାବ । ଭଞ୍ଜ-ସାହିତ୍ୟ ବୋଇଲେ ଉପେନ୍ଦ୍ର ଭଞ୍ଜଙ୍କର ଲେଖାଠାରୁ ଏହାର ମୂଳ ନୁହେଁ । ହୁଏତ ଉପେନ୍ଦ୍ର ଭଞ୍ଜ ଏ କ୍ଷେତ୍ରରେ ଅତି ବରିଷ୍ଠ ସାହିତ୍ୟିକ ଥିବାରୁ ତାଙ୍କ ନାମରେ ଅର୍ଥାତ୍ ସଙ୍କେତରେ ଏ ପ୍ରକାର ସାହିତ୍ୟ ସୂଚିତ ହୁଏ । ମାତ୍ର ଏ ସାହିତ୍ୟର ଆରମ୍ଭ ବହୁ ପୂର୍ବରୁ । ଏହା ଗଙ୍ଗକାଳୀନ ଛନ୍ଦ ଓ ଅଳଙ୍କାର ସାହିତ୍ୟର ଧାରା ଧରି ଶିଷ୍ଟମାନଙ୍କ ମଧ୍ୟରେ ଆଲୋଚନାର ସ୍ରୋତରେ ପିଟିଗଲା । ଏଥିରେ ସାରଳା ଦାସଙ୍କ

ନାୟୀ ଚରିତର ପ୍ରତିଷ୍ଠା ଓ ତନ୍ମଧ୍ୟରେ ଧାର୍ମିକ ନରନାରୀ ସମାଗମର ଅବରୋଧ ହେଉଛି ସାହିତ୍ୟର ପ୍ରାଣ । ଛନ୍ଦ ଓ ଅଲଙ୍କାର ଏହାର ଥିଲା ଅବଲମ୍ବନ ।

ଏହି ଛନ୍ଦ ଓ ଅଲଙ୍କାର ଗୌଡ଼ୀୟ ଅର୍ଥାତ୍ ସହଜିଆ ବୈଷ୍ଣବ ସାହିତ୍ୟରେ ଅଭାବ ନ ଥିଲା । ଚରିତ୍ରଗୁଡ଼ିକର ପାଇଁ ଏହାର ଆବଶ୍ୟକତା ଖୁବ୍ ଥିଲା । କିନ୍ତୁ ପ୍ରଭେଦଟି ସେଠାରେ ନୁହେଁ; ଏହା ଥିଲା ଭାବ-ରାଜ୍ୟରେ । ଏହି ଭାବ-ରାଜ୍ୟରେ ଖାଲି ଆଲଙ୍କାରିକ ଯୌନ ଶବ୍ଦ ବା ଭୋଗ ଯୋଜନାର ବିଶ୍ଳେଷଣ ଅଶ୍ଳୀଳ ନୁହେଁ । ଅଶ୍ଳୀଳତା ପାଇଁ ସାମନ୍ତସିଂହାରଙ୍କର ଦୁଷ୍ଟା-ହରଣ ପରି ବାଉଳ ସାହିତ୍ୟକୁ ତୁଳନାରେ ଦେଖ ।

ନାୟୀ ଚରିତ୍ର ପ୍ରକାଶରେ ଠିକ୍ ସମ୍ଭୋଗକ୍ରିୟାରେ ମଧ୍ୟ ନିଜେ ଉପେନ୍ଦ୍ର ଭଞ୍ଜ ଦିନ ହୋଇଯିବାରୁ 'ରସିକ ହାରାବଳୀ' ପରି ନାୟୀ ମୁହଁରେ କୁହାଇଛନ୍ତି—

"ହସ ହସ ହୋଇ ବୋଲଇ, ଏ ପୁଣି କିସ, ହେଲାଣି ଦିବସ"
(ଦଶମ ଛନ୍ଦ, ୧୪ ପଦ)

ପୁଣି 'ପ୍ରେମ-ସୁଧାନିଧି'ରେ ପ୍ରେମ-ସୁଧାନିଧି ମଧ୍ୟ ନିଜ କାନ୍ତକୁ ସ୍ପଷ୍ଟ ନିର୍ଦ୍ଦେଶ ଦେଲାପରି କହି ମନା କରିଛି—"ଦିବସରେ ରତି କଲେ ପୁରୁଷକୁ ହାନି ।" ଏହିପରି କଥା ଓ ଅନ୍ୟାନ୍ୟ ଅନେକ ସାମାଜିକ ବ୍ୟବହାରରେ ବ୍ରୀଡ଼ା ସଙ୍ଗେ ନାରୀର ପାତିବ୍ରତ୍ୟ ଧର୍ମ ଓ ନିଃସଙ୍କୋଚରେ ସ୍ୱାମୀର ସହଧର୍ମିଣୀ ଭାବରେ ସ୍ୱାମୀ ସଙ୍ଗେ ମିଶିବା ପ୍ରଭୃତି ଦେଖିଲେ ଭଞ୍ଜ-ସାହିତ୍ୟର ମହାଯୁଗରେ ସେ କାଳ ଓଡ଼ିଆ ସମାଜ ତଥା ସାହିତ୍ୟକୁ କଳନାରେ ଆଣି ମୁଗ୍ଧ ହେବାକୁ ହୁଏ ।

ଶ୍ଳୀଳ ଅଶ୍ଳୀଳ ବିଚାର ଏଠାରେ କରିବାର ଅବକାଶ ନାହିଁ । ପରକୀୟାରୁ ମୁଖ ଫେରାଇ ସମାଜ ଧର୍ମ ରକ୍ଷା କରିବାରେ କାଳର ସଙ୍କେତ ଯେଉଁ ପରିସ୍ଥିତିର ପ୍ରେରଣାରେ ବର୍ଣ୍ଣନାର ଯେ ଗୁରୁତ୍ୱ ନିତାନ୍ତ ଆବଶ୍ୟକ, ତାହାହିଁ ଏଠାରେ ଅଛି ।

ଅଶ୍ଳୀଳ କଥାଟିର ଯଥାର୍ଥ ଅର୍ଥ ହେଉଛି ଅ-ଶ୍ଳୀଳ, ଅର୍ଥାତ୍ ଯାହା 'ଶ୍ରୀ'ଯୁକ୍ତ ବା ସୁନ୍ଦର ନୁହେଁ । ସମାଜରେ ସମ୍ଭୋଗ କଦାପି ହେୟ ନୁହେଁ । ଗୀତାରେ ଭଗବାନ କହିଛନ୍ତି—

"ଯୁକ୍ତାହାର ବିହାରସ୍ୟ...ଯୋଗୋଭବତି ଦୁଃଖହା";
ଅର୍ଥାତ୍, ଯେ ଯଥୋପଯୁକ୍ତ ଆହାର, ବିହାର ବା ଭୋଗାଦି ବ୍ୟବହାର କରେ ତା'ର ଯୋଗ ଏକା ଦୁଃଖନାଶକର ହୁଏ । ବୁଦ୍ଧଦେବ ମଧ୍ୟ ନିଜର ମଧ୍ୟପନ୍ଥା ପ୍ରଚାର କରିବାରେ ଠିକ୍ ଏଇ କଥା କହିଥିଲେ । ସେ କହିଥିଲେ ଅତି କୃଚ୍ଛ୍ର ବ୍ରତୋପବାସାଦିର ତପସ୍ୟା ଛାଡ଼ । ଅନ୍ୟଦିଗଟର ଲୋକାପୃତର ଅତି ଭୋଗପ୍ରସ୍ପୃହା ଛାଡ଼ । ଅର୍ଥାତ୍, ଯେତିକି ଦରକାର ସେତିକି ଭୋଗ କର; ସମାଜରେ ଠିକ୍ ରହ ।

ସଂଯମରେ ସମ୍ଭୋଗ କରିବାହିଁ ସମାଜ । ତାହାହିଁ ମାନବର ସ୍ୱୃହଣୀୟ ଚରିତ୍ର । ଏହା ସମସ୍ତେ ସ୍ୱୀକାର କରିବେ । ସେ ହିସାବରେ ଦେଖିଲେ ଉଞ୍ଜସାହିତ୍ୟରେ ଆଦର୍ଶର ଆଦୌ ଅପଲାପ ନାଇ । ଲାବଣ୍ୟବତୀର ମଧୁଶଯ୍ୟା ଅଶ୍ଳୀଳ ନୁହେଁ । ସମାଜରେ ଏହା ଭୋଗ୍ୟବସ୍ତୁ । ଏହି ନିତ୍ୟ ଭୋଗ୍ୟବସ୍ତୁକୁ ବର୍ଣ୍ଣନା କରିବାରେ ଆଦର୍ଶର ଅପଲାପ ହୋଇନାଇ, ବରଂ ଯଥେଚ୍ଛା ବାଭତ୍ସତାର ପ୍ରତିରୋଧ କରାହୋଇଛି । ଏ ସବୁ ସେତେବେଳର ପରିସ୍ଥିତି କଳ୍ପନାରେ ସାରଳା ଦାସ ପ୍ରଭୃତିଙ୍କ ପରମ୍ପରା ପ୍ରକାଶରେ ଯଥାର୍ଥ ବିକାଶର ପନ୍ଥା । ଆଜି ସିନେମାରେ ନଗ୍ନ ଯୁବତୀନୃତ୍ୟ

ଦେଖାଇ ଦିଅଯାଉଛି । ସେଥିପାଇଁ ଗାଢ଼ ନିୟନ୍ତ୍ରଣ ଦରକାର ହେଲେ ମଧ୍ୟ, ଏଥିପାଇଁ ଠାଏ ଠାଏ ଏକାନ୍ତ ଦାବୀ ହେଲେ ମଧ୍ୟ ଅଙ୍କର ସମାଜରେ ତଥା ସାହିତ୍ୟରେ ସେ ଶୃଙ୍ଖଳା ହୁଏତ ରହୁନାଇ । ଶୃଙ୍ଖଳାର ଆବଶ୍ୟକତା ଯେଉଁଠାରେ ଏତେ ହୃଦ୍‌ଭାବରେ ଅନୁଭବ କରାଯାଉଛି, ଅଶ୍ଳୀଳତା ସେଇଠାରେ । ଲାବଣ୍ୟବତୀର ମଧୁଶଯ୍ୟା ବାହୁଡ଼ାରେ ତା'ର ଲେଶ ମାତ୍ର ନାଇ । ଆଜ ବିଶେଷ ବ୍ରଣ ନା କହିବା ଦରକାର ନାଇ । ପଣ୍ଡିତମାନେ ଦେଉଳ୍ପିତିର ଯଥାଚିତ୍ରରରେ ଏହାର କଳନା କରନ୍ତୁ । ଦେଖିବେ, ସାମାଜିକ ଜୀବନର ମଧୁର ସମ୍ଭୋଗରେ ଏସବୁ ଶ୍ଳୀଳ, ଏସବୁ ଯଥାର୍ଥରେ ସୁନ୍ଦର ।

ତା'ପରେ ଓଡ଼ିଶାରେ ସ୍ଥାପତ୍ୟ ଅନନ୍ୟସାଧାରଣ ସ୍ଥାପତ୍ୟ ଓ ସେଥି ସଙ୍ଗେ ଆଲଙ୍କାରିକ ପ୍ରସ୍ତର ଯେ ପ୍ରୟୋଗ; ସେଥିରେ ଯଥାର୍ଥ ଦାୟାଦ ହେଉଛନ୍ତି ଭକ୍ତ ଓ ଭକ୍ତପତ୍ନୀମାନେ । ନିଜର ସମାଜ ଓ ଧର୍ମଧାରଣାକୁ ଜଳାଞ୍ଜଳି ଦେଇ ଯେଉଁମାନେ ଲୋକରେ ଅପଧର୍ମ ଓ ବାମମାର୍ଗ ପ୍ରଚାର କରିବାପାଇଁ ସ୍ଥାନ ଓ ହୁଏତ ଅଳଙ୍କାରକୁ ପରିପ୍ରସ୍ତରରେ ଅବଲମ୍ବନ କରିଥିଲେ, ସେମାନେ ବରଂ ଓଡ଼ିଆ ସାହିତ୍ୟର ପରିପନ୍ଥୀ—ପୋଷକ ନୁହନ୍ତି ।

ଆଜ ଗୋଟିଏ ମାତ୍ର କଥା ଲକ୍ଷ୍ୟ କରିବାର ଅଛି । ପରକୀୟା ପ୍ରେମଧର୍ମର ପରିପ୍ରଚାର ଆରମ୍ଭ ହେଲା ବେଳକୁ ତତ୍କାଳୀନ ନବଦ୍ୱୀପର ଭାଷା ହେଲା କେତେକ ଓଡ଼ିଆଙ୍କର ଧର୍ମ ଭାଷା । ସେତେବେଳେ ଓଡ଼ିଆ ବଙ୍ଗଳାର ବିଶେଷ ଭେଦ ହୁଏତ ନ ଥିଲା । ତଥାପି 'ବିଦଗ୍ଧ ଚିନ୍ତାମଣି'ରେ 'ହେବ' ପରି ଶବ୍ଦ ଦେଖିବାକୁ ମିଳେ । ତା'ଛଡ଼ା ଭାଷା ହେଉଛି ଭାବର ପ୍ରକାଶ ।

ସାରଳା ଦାସ, ଏପରିକି ଅଚ୍ୟୁତାନନ୍ଦ ଦାସଙ୍କ ଭାଷା ମଧ୍ୟ ସହଜିଆ ବୈଷ୍ଣବଙ୍କ ରାଧାକୃଷ୍ଣ କଥୋପକଥନ ଓ କୀର୍ତ୍ତନାଦରେ ନାଇ । 'ଦାସ୍ୟଭାଭକ୍ତି' ରସାମୃତ ପରି ଗ୍ରନ୍ଥଗୁଡ଼ାକ ଓଡ଼ିଆରେ ଲେଖା ହେଲେହେଁ ଏହା ବଙ୍ଗଳା-ସାହିତ୍ୟ । ସେହି ସୂତ୍ରରେ ଦେଶର ଅନେକ ଜାଗାରେ ସଙ୍ଗୀତ ମଧ୍ୟ ସହଜିଆ ଭାବରେ ଭୂରି ପ୍ରଭାବିତ ହୋଇଥିଲା । କ୍ରମେ ସେ ପ୍ରଭାବ ଅତ୍ୟନ୍ତ ପ୍ରସାରିତ ହୋଇଥିବାର ଦେଖାଯାଏ । "ଭୁରୁ ନୀଳଭୃଙ୍ଗୀ ଭ୍ରମରୀ ଜୀବସଙ୍ଗୀ, ଗୃହିଁ। ଏ ମୋହନର ଭଙ୍ଗୀ" ପ୍ରଭୃତି ଅଯଥା କଠିନ ଶବ୍ଦ ବିନ୍ୟାସଠାରୁ "ମାଇଁ ମାଇଁ ଡାକୁଥିଲି, ପଶିଲ ଧରି ଭିଡ଼ିଲି" ପରି ସହଜ ଗୀତ ପର୍ଯ୍ୟନ୍ତ ସବୁଠି ଏହି ବଙ୍ଗଳା ସାହିତ୍ୟ ଦେଖିବାକୁ ମିଳେ । ମାତ୍ର ଏଠାରେ ମଧ୍ୟ ଦେଖିବାର ଅଛି, ଭଞ୍ଜ ସାହିତ୍ୟ ପ୍ରଭାବରେ ଏହା ପୂର୍ଣ୍ଣତଃ ବଙ୍ଗ-ସାହିତ୍ୟରେ ପରିଣତ ହୋଇ ନାଇ । ଆଳଙ୍କାରିକ ଛନ୍ଦରୀତିର ମୌଳିକତା ଏହି-ଠାରେ ସ୍ପଷ୍ଟ । ଓଡ଼ିଶୀ ସଙ୍ଗୀତ ବୋଲି ଯାହା ଲୋକରେ ପ୍ରଚଳିତ, ତାହା ଏହି ସବୁ ଗୀତ ମଧ୍ୟରେ ବହୁପରିମାଣରେ ଦେଖାଯାଏ, ତେଣୁ ଏ ସବୁ ସହଜିଆ ସାହିତ୍ୟ ହୋଇ ପାରିନାଇ । ଏବେ ମଧ୍ୟ ଏଇ ସବୁ ଗୀତରେ ସ୍ୱତନ୍ତ୍ର ଓଡ଼ିଶୀ ସଙ୍ଗୀତର ପ୍ରଭାବ ଦେଖିବାକୁ ମିଳେ ।

ପୁଣି ଭୌଗୋଳିକ ଭାବରେ ଭଞ୍ଜୀୟ ସାହିତ୍ୟର ବ୍ୟାପ୍ତି ଟିକିଏ ଦେଖାଯାଉ । ପୂର୍ବୋତ୍ତର ଓଡ଼ିଶାର ଉଚ୍ଚଭୂମି କେନ୍ଦୁଝର, ମୟୂରଭଞ୍ଜ ପ୍ରଭୃତିର ରାଜାମାନେ ଏଇ ଭଞ୍ଜରୀତିରେ କାବ୍ୟମାନ ଲେଖିଛନ୍ତି । 'ନୈଷଧ'ର ଯଥାବ୍ୟବହାର ସଙ୍ଗେ ଆଳଙ୍କାରିକତା ସେଥିରେ ଅତି ସ୍ପଷ୍ଟ । ସେ ସବୁ ଅନେକ ଏବେ ମୁଦ୍ରାଯନ୍ତ୍ରରୁ

ବାହାରର, ମାତ୍ର ସେ ସବୁର ବିଶେଷ ଆଲୋଚନା ହୋଇଛି ବୋଲି ମନେ ହେଉନାଇ । ତେଣୁ ଉତ୍କଳଭୂମି କେବଳ ଗଞ୍ଜାମ ଓ ପାର୍ଶ୍ୱବର୍ତ୍ତୀ ଗଡ଼ଜାତ ନୁହେଁ, ଏହା କେତେକ ଉପକୂଳ ଭୂମି ଛଡ଼ା ସମସ୍ତ ଓଡ଼ିଶା ବୋଲି ବୁଝିବାରେ ହୁଏତ ଆପତ୍ତି ହେବ ନାଇ ।

ଅଶ୍ଳୀଳତା କଥା ପୁଣି ଟିକିଏ କୁହାଯାଉ । ଅନେକେ ଉତ୍କଳୀୟ ସାହିତ୍ୟରେ ଏହି ଆକ୍ଷେପ କରିଥାନ୍ତି । ତେଣୁ ଆଜି ଟିକିଏ ଭଲ କରି କହିବାର କଥା । ସୂଚନାରେ କୁହାଯାଇଛି, ଉତ୍କଳ-ସାହିତ୍ୟରେ ଅଶ୍ଳୀଳତା ନାଇ, ତଥାପି ଉତ୍କଳଙ୍କର ଏ ଅଶ୍ଳୀଳତା ତେବେ କଅଣ ? କେତେକ ପ୍ରଚ୍ଛନ୍ନ କିମ୍ବା ଓ ଚ୍ଛନ୍ନ ସୂଚନାକୁ ବର୍ଣ୍ଣନାରେ ଅପ୍ରଚ୍ଛନ୍ନ କରି ଦେବାଇ ଏଇ ଅଶ୍ଳୀଳତା । ଏହା ସେ କଲେ କାହିଁକି ? ଏଥିରେ ବ୍ୟକ୍ତିର ବା ସମାଜର କି ଭୋଗ, ଲାଭ ବା କି ସଂଚକତର ପ୍ରୟୋଜନ ଅଛି ? ଏ କଅଣ ଖାଲି ମୂର୍ଖତା ? ଲକ୍ଷ୍ୟ କରିବାର ଅଛି, ଏ ସବୁ ବର୍ଣ୍ଣନା ପୁଣି ବିରଭାର୍ଯିଙ୍କ ଭିତରେ, କଠୋର ସାମାଜିକତା ଓ ସତୀତ୍ୱ ତଥା ସତୀସେବାର ଘୋର ସଂଯମ ଭିତରେ । ଅକାଟ୍ୟ ପୂର୍ବଜନ୍ମ ଓ ଫଳଭୋଗ ଉପରେ ଏହା ପୂର୍ଣ୍ଣ ପ୍ରତିଷ୍ଠିତ । ଏହା ପୁଣି ନରନାରୀର ସ୍ୱଚ୍ଛନ୍ଦ ସମାଗମ ଆଦୌ ନୁହେ । ଏହା ପ୍ରଚଳିତ ପରମ୍ପରା, ଲୋକବିଧି ତଥା ସମାଜମାନରେ ପୂରାପୂରି ଶୃଙ୍ଖଳିତ । ଏପରିକି ଆଠମଙ୍ଗଳା ଦିନ ବରଭାର୍ଯୀର ଦେଖା ପର୍ଯନ୍ତ ହେଉନାଇ । ସମସ୍ତ ଫଭୋଗ ଭିତରେ ଭାର୍ଯାଇ ଭୋଗ୍ୟା—ସେ ଅନ୍ୟ ନାରୀ ନୁହେ—ସେ ସହଧର୍ମିଣୀ । ସେଇ ଭାବରେ ସେ ମୁହଁରେ ନିଜକୁ ଦାସୀ ବୋଲି କହିଲେ ହେଁ ସେ ଯଥାର୍ଥ ନାରୀ-ସମ୍ମାନରେ ସମଲଂକୃତା । ତେବେ ବର୍ଣ୍ଣନାରେ ଏ ଅନାବଶ୍ୟକ

ପ୍ରକାଶ କାହିଁକି ? କେହି ହୁଏତ କହି ପାରନ୍ତି ଏ ସବୁ ବନ୍ଧାଦନବନ୍ଧ କାମଶାସ୍ତ୍ରର ଜ୍ଞାନ ଓ ପ୍ରୟୋଗ ଓ ସେଇ ପ୍ରୟୋଗର କୌଶଳ-ପ୍ରକାଶ । କିନ୍ତୁ ତା ନୁହେ । କାମଶାସ୍ତ୍ରର ପ୍ରୟୋଗ ଦେଖାଇବାପାଇଁ କେବଳ ଭାର୍ଯ୍ୟା କାହିଁକି ଲୋଡ଼ା ହେବ । ଉପେନ୍ଦ୍ର ଭଞ୍ଜଙ୍କୁ ବର୍ଣ୍ଣନାପାଇଁ କଅଣ ସାଧାରଣ ନାୟିକା ବା ବେଶ୍ୟା ମିଳୁ ନ ଥିଲେ ? କାମ ସମ୍ଭୋଗ ନିମନ୍ତେ ବିବାହିତାଠାରୁ 'କରମଙ୍ଗା' ସାଧନା ଓ ସାଧାରଣୀ ଅଧିକ କୌଶଳପୂର୍ଣ୍ଣା ଓ ପ୍ରୀତିଦାୟିନୀ ଏହା କିଏ ନ ଜାଣେ ? କଳାଦୃଷ୍ଟିରେ ଏଠାରେ ବିବାହ ବୋଲି ଯାହା ଫୁଟୁଚି, ତାର ଆରମ୍ଭ ଯୁବକ-ଯୁବତୀର ସ୍ୱୈର ସମାଗମରେ ନୁହେ କି ? କଥାରେ ଯେତେ ଆଦର୍ଶ ପ୍ରୀତି ଦେଖାଇଲେ ମଧ୍ୟ ସେ ମଧୁର ସମାଗମରେ ନାୟିକା ଭୋଗ୍ୟା—ସହଧର୍ମିଣୀ ନୁହେ । ଅନ୍ତତଃ ସେ ଭାବରେ ବା ସେ ସଙ୍କେତରେ ସେ ସମାଗମଟିର ଆରମ୍ଭ ନୁହେ । ବରଂ ତାର ପରମ୍ପରା ଦେଖାଇ ପାରେ ଦୁଷ୍ମନ୍ତଙ୍କ ଗାନ୍ଧର୍ବ ବିବାହରେ । ପରେ ସେ ସହଧର୍ମିଣୀ ହୋଇପାରେ । ସେ ସ୍ୱତନ୍ତ୍ର କଥା । ହିନ୍ଦୁ ପୁନର୍ଜନ୍ମ ବା କର୍ମଫଳ ବିଶ୍ୱାସର ସେ ସବୁଥିରେ କୌଣସି ସମ୍ପର୍କ ନାଇ ।

ହେଲେହେଁ ପାରିପାର୍ଶ୍ୱିକ ପରିସ୍ଥିତିରେ ଏଇ ସ୍ୱୈର ସମାଗମର ଉଜ୍ଜ୍ୱଳତା ତଥା ବୀଭତ୍ସ ଅଶ୍ଳୀଳତା ଦେଖିଲେ ଏହା ଭଞ୍ଜ ଓ ଭଞ୍ଜୀୟମାନଙ୍କୁ ଚିହ୍ନିବାର ସୁବିଧା ହେବ । ଦମୟନ୍ତୀର ବର୍ଣ୍ଣନା ସଙ୍ଗେ ଭଞ୍ଜକଳ୍ପିତ ନାୟିକାର କେତେକ ସାମଞ୍ଜସ୍ୟ ଥିଲେହେଁ ନୈଷଧର ଶ୍ରୀହର୍ଷ ଭଞ୍ଜଙ୍କର ଆଦର୍ଶ ନୁହନ୍ତି । ନଳ-ଦମୟନ୍ତୀଙ୍କ ବିବାହପର ଭୋଗ ପ୍ରଭୃତି ସ୍ୱଚ୍ଛନ୍ଦ ନାୟସମାଗମ ତଥା ପରଦାରସଙ୍ଗମର ସଙ୍କେତରେ ପୂର୍ଣ୍ଣ । ଭଞ୍ଜ ତହିଁରେ

ବିଳାସୀ ନୁହନ୍ତି । ପୁଣି ସମସ୍ତ ଅଲଙ୍କାରିକତାସହେ ସାରଳା-ଦାସଙ୍କ ଧ୍ରୁବ ଜନ୍ମ, ଫଳଭୋଗ ଓ ନାରୀ ସମ୍ମାନ 'ନୈଷଧ'ରେ ନାଇ ।

ଏତେ ସଂଯତ ସୁନ୍ଦର ପାରମ୍ପରିକ ଓ ସାମାଜିକ ଭାବଧାରା ଓ ପ୍ରେରଣା ଭିତରେ ସଂଯତ ଓ ଶୃଙ୍ଖଳିତ ଗାର୍ହସ୍ଥ୍ୟର ନିର୍ଦ୍ଦିଷ୍ଟ ଓ ଦୃଢ଼ ସୀମା ଭିତରେ ରହି ବରଭାର୍ଯ୍ୟା ସମାଗମର ପ୍ରଚ୍ଛନ୍ନ କ୍ରିୟାକୁ ବର୍ଣ୍ଣନାରେ ଏପରି ପ୍ରକାଶ କରିବାର ହେତୁ ତେବେ କଣ ? ଏ ହେତୁ ଖୋଜିବାକୁ ଆଗ ଇତିହାସକୁ ଟିକିଏ ଦୃଷ୍ଟି ଦିଆଯାଉ ।

ପ୍ରାଚୀନ କାଳରୁ ପୂର୍ବ ଓ ଉତ୍ତର ଭାରତରେ ବ୍ୟାପି ଯାଇଥିଲା ତନ୍ତ୍ର ଓ କୌଳ ଧର୍ମ । ସେଥିରେ ପଞ୍ଚମକାରାଦି ସୂତ୍ରରେ ଯନ୍ତ୍ର ତନ୍ତ୍ର ନାରୀଠାରେ ଯଥେଚ୍ଛା ବ୍ୟବହାରିଇ ମହାଧର୍ମ ଭାବି ଥିବା କଥା ସୂଚିତ ହୋଇଛି । 'କୁଳୀନ'ର ଏଇ କୌଳ ତନ୍ତ୍ର ସାଧନା ଖ୍ରୀ: ୧୬୩୦ ପରେ ଅର୍ଥାତ୍ ଖୋରଧାର ଭୋଇବଂଶୀୟ ନରସିଂହ ଦେବଙ୍କଠାରୁ ସ୍ମୃତ୍ୟାନୁକରଣରେ ଉତ୍କଳର ଶ୍ରେଷ୍ଠ ଓ ନୟାମକ ପୁରୀ ବ୍ରାହ୍ମଣ ସମାଜରେ ପଶିବାରେ ଲାଗିଥିଲା । ତେଣେ ଅନ୍ୟତର ସମାଜଶ୍ରେଷ୍ଠ, ରାଜପ୍ରତିଷ୍ଠିତ କରଣମାନେ ମଧ୍ୟ ଖୁବ୍ କମରେ ରାୟ ରାମାନନ୍ଦଙ୍କ କାଳରୁ ଆରମ୍ଭ କରି ସହଜିଆ ବୈଷ୍ଣବଙ୍କ ମାର୍ଗରେ ଯନ୍ତ୍ର ତନ୍ତ୍ର ସୁନ୍ଦରୀ ଯୁବତୀ ଦେଖି ତାଙ୍କୁ ରାଧାରୂପେ ରତିରେ ଏକାକାର କରି ମହାସୁଖରୂପ କୃଷ୍ଣପ୍ରାପ୍ତିର ବନ୍ୟା ସମାଜରେ ଛୁଟାଉଥିଲେ । 'ପ୍ରଜ୍ଞାପାରମିତା' କଥାରେ ତନ୍ତ୍ରର ଅଗମ୍ୟାଗମନାଦି ସ୍ୱୈର ନାରୀସମାଗମ ଓ ତା ପ୍ରଣାଳୀ ଓ ପ୍ରକ୍ରିୟା ପ୍ରଭୃତି କଥା ସୂଚନାରେ ପ୍ରସଙ୍ଗାନ୍ତରରେ କୁହା ହୋଇଛି । ଏବେ ସହଜିଆ ବୈଷ୍ଣବଙ୍କ ଶାସ୍ତ୍ରରୁ ଟିକିଏ ଶୁଣ ।

ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା କୋଷ' ସହଜିଆ ପ୍ରବନ୍ଧରେ ପ୍ରାଚ୍ୟ ବିଦ୍ୟାମହାର୍ଣ୍ଣବ ସ୍ୱର୍ଗତ ନଗେନ୍ଦ୍ର ନାଥ ବସୁଙ୍କ ବଙ୍ଗଳା ଭାଷାକୋଷରୁ ଅନେକ କଥା ମଧ୍ୟରେ ଏହା ଉଦ୍ଧାର କରିଛନ୍ତି:—

"ଏହିପରି ଶ୍ରୀକୃଷ୍ଣ ନାୟିକାଙ୍କ ଦେହକୁ ଶ୍ରୀବୃନ୍ଦାବନ ଓ ପରକୀୟା ନାୟିକାଙ୍କଠାରେ ଶ୍ରୀଶ୍ୟାମସୁନ୍ଦର ଓ ରାଧାରାଣୀଙ୍କ ଅଧିଷ୍ଠାନ ବୋଲି ବିଶ୍ୱାସ କରି ଏମାନେ ତାଙ୍କ ସେବା କରନ୍ତି । ସେମାନେ କହନ୍ତି, ପ୍ରେମ ବିନା ବ୍ରଜେନ୍ଦ୍ର ନନ୍ଦନଙ୍କ ପ୍ରାପ୍ତି ଦୁର୍ଲଭ । ସେମାନେ କହନ୍ତି, ପରକୀୟା ନାରୀଙ୍କ ସଙ୍ଗେ ତାଙ୍କ ଦେହ ବୃନ୍ଦାବନରେ ବିଚରଣ କରି, ଉକ୍ତ ବୃନ୍ଦାବନରେ ନିଜର ଜୀବନ, ଯୌବନ ଓ ଦେହ ଅର୍ପଣ ଓ ତାଙ୍କ ରତିରେ ନିଜ ରତି ମିଶାଇ ଭାବ ଓ ପ୍ରେମକୁ ଏକ କରି 'କାମବୀଜ' ଓ 'କାମଗାୟତ୍ରୀ'ଦ୍ୱାରା ସେହି କାମିନୀଙ୍କ କାମରତିକୁ ଉତ୍ତେଜିତ କରି, ତାଙ୍କ ଅଧରାମୃତ ପାନ ସାଧକ ଓ ପରକୀୟା ଦୁହେଁ ଶ୍ରୀକୃଷ୍ଣଙ୍କୁ ଲାଭ କରିବେ । ଅତଏବ ଏମାନଙ୍କ ମତରେ ସାଧନ ଭଜନ କରିବାକୁ ହେଲେ, ପ୍ରଥମତଃ ଗୋଟିଏ ସୁନ୍ଦରୀ, ନବ ଯୌବନ-ସମ୍ପନ୍ନା ପରକୀୟା ରସିକା ରମଣୀ ଲୋଡ଼ା । ଇତ୍ୟାଦି ।" ଧର୍ମ ନାମରେ ଏଇ ସବୁ ସହଜ ସୁଖକର ପ୍ରଣାଳୀ ପରିପ୍ରେକ୍ଷିତରେ ଗୃହୀ ବିଡ଼ମ୍ବିତାସରେ ଦାମ୍ପତ୍ୟ ପରି ଛିଡ଼ା ହୋଇଥିଲେ ଭିକ୍ଷୁ ।

ସେତିକି ନୁହେଁ । ଆଉ ଗୋଟିଏ କଥା ମଧ୍ୟ ଏଠି ଦେଖି ବୁଝିବାର ଅଛି । ପୂର୍ବ-ଭାରତର ବୌଦ୍ଧ ଓ ହିନ୍ଦୁର କୌଳତନ୍ତ୍ର ଓ ତହିଁରୁ ବାହାରିଥିବା ସହଜିଆ ଧର୍ମ ଯେତେବେଳେ ଅନ୍ଧ ଭାର ନିମ୍ବାର୍କଙ୍କ ପରମାଶ୍ରୟ ପାଇଁ ପରକୀୟା ବୈଷ୍ଣବର ରାଧା-

କୃଷ୍ଣରେ ପରିଣତ ହେଲା, ପୁଣି ବୃନ୍ଦାବନବାଟେ ସମସ୍ତ ଉତ୍ତର-ଭାରତରେ ନାନାଭାବରେ କ୍ରମେ ବ୍ୟାପ୍ତ ହେବାରେ ଲାଗିଲା, ସେତେବେଳେ ସେଇ ନିମ୍ବାର୍କଙ୍କ ପରେ ପରେ ଉତ୍ତର ଓ ପଶ୍ଚିମ ଭାରତରେ ଯେମିତିକି ରାଧାକୃଷ୍ଣଙ୍କ ପ୍ରତିକ୍ରିୟାରେ ବାହାରିଥିଲେ, 'ସୀତାରାମ'। ଏ ଅନ୍ତ ମନୀଷିମାନେ ଯଥାର୍ଥରେ ଧର୍ମ ତଥା ସମାଜରେ ସ୍ୱଚ୍ଛନ୍ଦ ବ୍ୟଭିଚାର ପରିବର୍ତ୍ତିରେ କଠୋର ସତୀତ୍ୱର ଆଦର୍ଶକୁ ପ୍ରତିଷ୍ଠା କରିବାର ଲୋଡିଲେ। ଜଗନ୍ନାଥଙ୍କ ଓଡ଼ିଶାରେ, ଧର୍ମନାମରେ ସ୍ୱଚ୍ଛନ୍ଦ ନାରୀସମାଗମର ପ୍ରବଳ ପ୍ରଚାର ସତ୍ତ୍ୱେ ତାନ୍ତ୍ରିକ ଓ ବୈଷ୍ଣବର ଘୋର ପ୍ରଭାବ ଭିତରେ ଏଇ ପବିତ୍ର 'ରାମ' ସ୍ରୋତ ପଶିଥିଲା। ଆଜି ମଧ୍ୟ ଓଡିଶାରେ—ବିଶେଷତଃ, କୋରାପୁଟ, ଗଞ୍ଜାମ, ପୁରୀ, କଟକ ପ୍ରଭୃତିରେ ଶବକୁ ଶ୍ମଶାନକୁ ନେଲାବେଳେ ଲୋକେ 'ହରି ବୋଲ' 'ବୋଲ ହରି' ନ କହି କହନ୍ତି, 'ରାମ ନାମ ସତ୍ୟ ହେ'। କ୍ଷୁଦ୍ର ଦୋଷଦୁଷ୍କୃତ ପ୍ରଭୃତିର ସାମ୍ମୁଖ୍ୟ ବର୍ଜନ କରିବାପାଇଁ 'ହରି ହରି' ନ କହି କହନ୍ତି 'ରାମ ରାମ'। ଏଇପରି ଆଚାର ବ୍ୟବହାରରେ ଖୋଜିଲେ ବହୁତ ପ୍ରଭେଦ ଦେଖାଯିବ। ଏଇ ପ୍ରଭେଦର ସ୍ପଷ୍ଟ ଓ ଜୀବନ୍ତ ପ୍ରତୀକ ଥିଲେ ସ୍ୱୟଂ ଉପେନ୍ଦ୍ର ଭଞ୍ଜ। ଏପରିକି ଭଞ୍ଜ-ସାହିତ୍ୟରେ ପ୍ରକ୍ଷେପ ବାଛିବାର ମଧ୍ୟ ଏ ଗୋଟିଏ ବିଶିଷ୍ଟ ମାନଦଣ୍ଡ। ଉପେନ୍ଦ୍ର ଭଞ୍ଜ ଥିଲେ ରାମଭକ୍ତ। ସେ ନୈଷ୍ଠିକ ଭାବରେ 'ରାମତାରକ' ମନ୍ତ୍ର ଜପ କରିଥିଲେ। ତାଙ୍କର ବିଶ୍ୱାସ ଥିଲା, ତାରି ସିଦ୍ଧିରେ ସେ ହୋଇଥିଲେ କବି। ବୈଦେହୀଶବିଳାସ ଥିଲା ତାଙ୍କର ପ୍ରଥମ କାବ୍ୟ।

ଅତଏବ, ଉପର ସୂଚିତ ଏଇ ଦୁରତିକ୍ରମଣୀୟ ଦୁର୍ଦ୍ଦୈବ ପରି ମାଡ଼ି ଆସୁଥିବା ପ୍ଲାବନୀ ବନ୍ୟା ଓ ବିଧ୍ୱଂସୀ ଝଞ୍ଜା ଭିତରେ

ନିଜର ଅଷ୍ପବୟସ୍କ ଅଟଳ ଭୁଙ୍ଗମାରେ ଠିଆ ହୋଇଥିଲେ ଉପେନ୍ଦ୍ର ଭଞ୍ଜ । ସେକାଳ ରାଜମାନଙ୍କ ପରାଧୀନତାର ନିର୍ବେଦ, ନିଃସଙ୍କୋଚ ଓ ଦାୟିତ୍ୱହୀନ ଜୀବନରେ ସହଜିଆ ଓ ତନ୍ତ୍ରର ସ୍ୱଚ୍ଛନ୍ଦ ତଥା ଅବାଧ ଯୌନଭୋଗ ଲୋକଙ୍କୁ କ୍ଷୟରୋଗ ପରି କୌଶଳରେ ଆକ୍ରମଣ କରି ଭୁଲାଇଲାବେଳେ ପବନ ଦାମ୍ପତ୍ୟ ଜୀବନରେ ବାଧ୍ୟବାଧ୍ୟ ସଂଭୋଗର ପ୍ରଚ୍ଛନ୍ନ କ୍ରିୟାକୁ ଟିକିଏ ଅପ୍ରଚ୍ଛନ୍ନ କରି ଲୋକଙ୍କର ଗତି ଫେରାଇବାର ପ୍ରଚେଷ୍ଟା ଅଶ୍ଳୀଳତା ଯେଉଁମାନେ ଦେଖାନ୍ତି, ସେମାନେ ଯଥାର୍ଥ ବିଷୟବସ୍ତୁ ଦେଖନ୍ତି ନାଇ; କିମ୍ବା ସେଇ ବିଷୟବସ୍ତୁର ଯଥାର୍ଥ ପ୍ରଭାବ, ପ୍ରେରଣା ଓ ପରିସର ବୁଝନ୍ତି ନାଇ ।

ଏ ତଥାକଥିତ ଅଶ୍ଳୀଳତା, ଅଶ୍ଳୀଳତା ନୁହେଁ । ଏଇ ତଥାକଥିତ, ବିଶେଷରେ ଗୌଡ଼ୀୟ ବୈଷ୍ଣବ ଓ ତାନ୍ତ୍ରିକ ଭାବଭାବିତଙ୍କ ନାମିତ, ତଥାକଥିତ ଅଶ୍ଳୀଳତା ଫଳରେ ବରଂ ଆମ ମୈତ୍ରୀଦେବ, ଜଗତ୍‌ପୁରୁଷ, ପୁରୁଷୋତ୍ତମ ଜଗନ୍ନାଥ ଏବେ ମଧ୍ୟ ପ୍ରଚାର ଓ ପ୍ରଭାବର ଏତେ ବିଷତ୍ପାତ ସତ୍ତ୍ୱେ ଆମ ବାବାଜୀ ମାତାଙ୍କ 'ରାଧେଶ୍ୟାମ' ହୋଇ ନାହାନ୍ତି । ପୁରୀ, ନବଦ୍ୱୀପ ବା ବୃନ୍ଦାବନ ହୋଇନାଇ କିମ୍ବା ଆମ ଭୁବନେଶ୍ୱର ଲିଙ୍ଗରାଜ ଆମ କୌଳ-ଧର୍ମୀ ତାନ୍ତ୍ରିକଙ୍କ ଶିବ ଶକ୍ତିରେ ପରିଣତ ହୋଇନାହାନ୍ତି । ଏସବୁ ଭିତରେ ଅଛି ପରଂପରାଗ୍ରାହ୍ୟତ ପରିସ୍ଥିତିରେ ଆମ ଉପେନ୍ଦ୍ର ଭଞ୍ଜଙ୍କ ନିର୍ମଳ ଓ ସ୍ପୃହଣୀୟ ପୁରୋଦୃଷ୍ଟି । ଏଇଥିରେ କବି ହୁଏ ଦ୍ରଷ୍ଟା । ଏଇଥିପାଇଁ ଆମର କବି ବୋଇଲେ ଦ୍ରଷ୍ଟା । ସମସ୍ତ ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ଆକ୍ରମଣ ଭିତରେ ଆମ ଘୋର ଗର୍ବିତ ଦୈନ୍ୟ ଓ ଜୀବନ୍ୟାସ ମନ୍ତ୍ରର ପ୍ରତୀକ ଏଇ

ହେଉଛନ୍ତି—ଆମ ଉପେନ୍ଦ୍ର ଭଞ୍ଜ । ଏହାଇ ଆମର ଭଞ୍ଜୀୟ ଜାତୀୟ ସାହିତ୍ୟ । ଏଇ ମହାନୁଭବ ଭଞ୍ଜ ଓ ଭଞ୍ଜୀୟ ସାହିତ୍ୟର ଏ ପୁଣ୍ୟ ସ୍ମୃତି-ପୀଠ ଯେଉଁମାନେ ଆଜି ନାନା ପ୍ରତିରୋଧ ଭିତରେ ପ୍ରତିଷ୍ଠା କରିବାରେ ଲାଗିଛନ୍ତି, ସେମାନେ ଧନ୍ୟ । ତାଙ୍କର ଦିବ୍ୟ ଦୃଷ୍ଟି ଫିଟୁ । ଆଉ ବିଶେଷ କହିବାର ନାହିଁ । ଆଜି ଏତିକି । ଶୁଭମସ୍ତୁ ।